# ସରଳ ବନସ୍ପତି ଚିକିତ୍ସା




ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ ଚିକିତ୍ସାଳୟ ସମିତି, ପୁରୀ

Digitized by srujanika@gmail.com

# ସରଳ ବନସ୍ପତି ଚିକିତ୍ସା

# SARALA VANASPATI CHIKITSA



ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ ଚିକିତ୍ସାଳୟ ସମିତି
ଭି.ଆଇ.ପି. ରୋଡ୍, ପୁରୀ-୭୫୨୦୦୨
(ଓଡ଼ିଶା ସରକାରଙ୍କ ଦ୍ୱାରା ଅନୁମୋଦିତ )

Gopabadhu Ayurveda Mahavidyalaya Hospital Society
V.I.P. Road, Puri - 752002
(Recognised by Govt. of Orissa)

Digitized by srujanika@gmail.com

ପ୍ରକାଶକ ଏବଂ ସହାୟତା:

ସବୁଜ ଜୀବନ ପ୍ରକଳ୍ପ ଭାରତ (ସଜୀପ୍ରଭା)
The Green-Life Movement India (TGLMI)
ତୃତୀୟ ଗଳି, ଗୁଣ୍ଡିଚା ବିହାର, ପୁରୀ-୭୫୨୦୦୨
ପୋଷ୍ଟ ବକ୍ସ-୪୬

ପ୍ରଥମ ସଂସ୍କରଣ :

ଜାନୁୟାରୀ, ୨୦୦୪

ମୁଦ୍ରଣ:

ପ୍ରିୟଦର୍ଶୀ ପ୍ରକାଶନୀ, ୬୩-ଫରେଷ୍ଟ ପାର୍କ,
ଭୁବନେଶ୍ୱର-୭୫୧ ୦୦୯

ପୁସ୍ତକ ପ୍ରାପ୍ତିସ୍ଥାନ :

୧. ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ, ଭି.ଆଇ.ପି ରୋଡ୍,
ପୁରୀ: ୭୫୨୦୦୨

୨. କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଆୟୁର୍ବେଦ କଲେଜ, ଅଙ୍କୁଶପୁର,
ବ୍ରହ୍ମପୁର , ଗଞ୍ଜାମ-୭୬୧୧୦୦

୩. ସରକାରୀ ଆୟୁର୍ବେଦ କଲେଜ, ଭି.ଆଇ.ପି. ରୋଡ୍,
ବଲାଙ୍ଗିର-୭୬୭୦୦୧

୪. ଭାରତୀୟ ଭେଷଜ ଓ ହୋମିଓପ୍ୟାଥି ନିର୍ଦ୍ଦେଶାଳୟ, ଓଡ଼ିଶା,
୩ୟ ମହଲା, ମୁଖ୍ୟ ବିଭାଗୀୟ ଦପ୍ତର,
ଭୁବନେଶ୍ୱର-୭୫୧୦୦୧

*ମୂଲ୍ୟ- ଟ.୮୦.୦୦ (ଅଶି ଟଙ୍କା) ମାତ୍ର*

---

*Price - Rs.80.00 (Rupees Eighty) only*

Digitized by srujanika@gmail.com

**ମୁଖ୍ୟ ଉପଦେଷ୍ଟା ଓ ପ୍ରେରଣା:**

ଶ୍ରୀ ବିଜୟ କୁମାର ଦାସ, ନିର୍ଦ୍ଦେଶକ
ଭାରତୀୟ ଭେଷଜ ଓ ହୋମିଓପ୍ୟାଥି ନିର୍ଦ୍ଦେଶାଳୟ,
ଓଡ଼ିଶା, ଭୁବନେଶ୍ୱର

**ଉପଦେଷ୍ଟା ମଣ୍ଡଳୀ:**

ଡ଼ା. ନରସିଂହ ସାହୁ, ଅଧ୍ୟକ୍ଷ
କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଆୟୁର୍ବେଦ କଲେଜ
ଅଙ୍କୁଶପୁର, ବ୍ରହ୍ମପୁର, ଗଞ୍ଜାମ
ଡ଼ା. ଯଜ୍ଞେଶ୍ୱର ନାଥ, ଅଧ୍ୟକ୍ଷ
ସରକାରୀ ଆୟୁର୍ବେଦ କଲେଜ, ବଲାଙ୍ଗୀର
ଡ଼ା. କେଦାର ପ୍ରସାଦ ନାୟକ, ଆୟୁର୍ବେଦ ନିରୀକ୍ଷକ
ଡ଼ା. ସ୍ୱପ୍ନେଶ୍ୱର ପଣ୍ଡା, ଆୟୁର୍ବେଦ ଚିକିତ୍ସା ଅଧିକାରୀ

**ସଂପାଦକ ମଣ୍ଡଳୀ:**

ଡ଼ା. ବଲ୍ଲଭ କୁମାର ଜୟସିଂହ, ଅଧ୍ୟକ୍ଷ
ଡ଼ା. ନାରାୟଣ ମହାନ୍ତି, ସହଯୋଗୀ ପ୍ରାଧ୍ୟାପକ
ଡ଼ା. ନାରାୟଣ ଚନ୍ଦ୍ର ଦାଶ, ସହଯୋଗୀ ପ୍ରାଧ୍ୟାପକ
ଡ଼ା. ପ୍ରସନ୍ନ କୁମାର ନାଥଶର୍ମା, ସହଯୋଗୀ ପ୍ରାଧ୍ୟାପକ
ଡ଼ା. ବୈକୁଣ୍ଠ ନାଥ ମିଶ୍ର , ସହଯୋଗୀ ପ୍ରାଧ୍ୟାପକ
ଡ଼ା. ମୃତ୍ୟୁଞ୍ଜୟ ପଣ୍ଡା, ଅଧ୍ୟାପକ,
ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ, ପୁରୀ

ଏବଂ

ଡ଼ା. ନରେନ୍ଦ୍ର ପ୍ରସାଦ ହୋତା, ଗବେଷଣା ଅଧିକାରୀ,
ଭାରତୀୟ ଭେଷଜ ଓ ହୋମିଓପ୍ୟାଥି ନିର୍ଦ୍ଦେଶାଳୟ,
ଓଡ଼ିଶା, ଭୁବନେଶ୍ୱର

*Digitized by srujanika@gmail.com*

# ମୁଖବନ୍ଧ

ଆଦିମ କାଳରୁ ମନୁଷ୍ୟ ଆହାର, ଉପକରଣ ତଥା ବିଭିନ୍ନ କାର୍ଯ୍ୟରେ ବନସ୍ପତିର ଉପଯୋଗ କରିଆସୁଅଛି । ଚିକିତ୍ସା କ୍ଷେତ୍ରରେ ମଧ୍ୟ ଏହାର ପ୍ରୟୋଗ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଆସୁଛି । ବିଶ୍ୱର ସମସ୍ତ ଚିକିତ୍ସା ପଦ୍ଧତି, ଯଥାଃ ଆୟୁର୍ବେଦ, ୟୁନାନୀ, ସିଦ୍ଧ, ହୋମିଓପ୍ୟାଥି, ପ୍ରାକୃତିକ ଚିକିତ୍ସା, ଏଲୋପାଥି ଏବଂ ଦେଶୀ ଚିକିତ୍ସାରେ ଔଷଧୀୟ ବନସ୍ପତି ପ୍ରଚୁର ମାତ୍ରାରେ ବ୍ୟବହାର କରାଯାଉଅଛି । ସର୍ବ ପ୍ରଥମେ ଆୟୁର୍ବେଦ ହିଁ ଏକ ବୈଜ୍ଞାନିକ ଚିକିତ୍ସା ପଦ୍ଧତି ଭାବରେ ଭାରତରେ ପ୍ରଚଳିତ ହୋଇଥିଲା ।

ପ୍ରାଚୀନ ଓ ଆଧୁନିକ ଭାରତବର୍ଷ ବ୍ୟତୀତ ଅନ୍ତର୍ରାଷ୍ଟ୍ରୀୟ ସ୍ତରରେ ମଧ୍ୟ ଔଷଧ ପ୍ରସ୍ତୁତି ପାଇଁ ଭାରତୀୟ ବନସ୍ପତିର ଚାହିଦା ଓ ଅନୁସନ୍ଧାନ ଦିନକୁ ଦିନ ବଢ଼ିବାରେ ଲାଗିଛି । ମାତ୍ର ବନସ୍ପତିର ଚିହ୍ନଟ ଅଭାବ ଓ ଗୁଣକର୍ମ ନଜାଣି ବହୁଲୋକ ତାଙ୍କର ଅନ୍ୟାନ୍ୟ ଆବଶ୍ୟକତା ପୂରଣ ପାଇଁ ମୂଲ୍ୟବାନ ବନସ୍ପତିକୁ ନଷ୍ଟ କରିଦେଉଛନ୍ତି । ଏହାଦ୍ୱାରା କ୍ରମଶଃ ଦୁର୍ଲଭ ବନସ୍ପତି ଲୋପ ପାଇବାକୁ ବସିଲାଣି । ଜଙ୍ଗଲର ବିନାଶ ତଥା ରକ୍ଷଣାବେକ୍ଷଣ ଅଭାବ ହେତୁ ମଧ୍ୟ ବହୁମୂଲ୍ୟ ଔଷଧୀୟ ବନସ୍ପତି ନଷ୍ଟ ହେବାରେ ଲାଗିଛି ।

ଗ୍ରାମାଞ୍ଚଳ ଓ ଆଦିବାସୀ ଅଞ୍ଚଳରେ ଅନୁଭୂତି ସଂପନ୍ନ ବୈଦ୍ୟଙ୍କ ଦ୍ୱାରା ଦେଶୀ ଚିକିତ୍ସା ମାଧ୍ୟମରେ ଅସାଧ୍ୟ ରୋଗ ଓ ହାଡ଼ଭଙ୍ଗା ଆଦିର ଚିକିତ୍ସାଶୈଳୀରବର୍ଣ୍ଣନା କୌଣସି ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ନାହିଁ । ଏହି ପରିପେକ୍ଷୀରେ ଗୋପବନ୍ଧୁ ଆୟୁର୍ବେଦ ଚିକିତ୍ସାଳୟ ସମିତି ଉଦ୍ୟମରେ ପ୍ରକାଶିତ ହେଉଥିବା **"ସରଳ ବନସ୍ପତି ଚିକିତ୍ସା"** ପୁସ୍ତକଟି ଅତ୍ୟନ୍ତ ଉପାଦେୟ ଓ ଯୁଗୋପଯୋଗୀ । ଏହି ପୁସ୍ତିକାଟିରେ ସହଜରେ ମିଳୁଥିବା ୬୨ ଟି ବନସ୍ପତିର ସବିଶେଷ ବିବରଣୀ ସହିତ ଔଷଧୀୟ ଗୁଣ ଓ ବ୍ୟବହାର ବର୍ଣ୍ଣନା କରାଯାଇଅଛି ।

କେତେକ ବୈଦ୍ୟଙ୍କର ପାରମ୍ପରିକ ଚିକିତ୍ସା ମଧ୍ୟରୁ କେତେକ ଟୁଟୁକା ଚିକିତ୍ସା ଏହି ପୁସ୍ତକରେ ସ୍ଥାନ ପାଇଅଛି ।

ଏହା ସହିତ ବ୍ୟବସାୟିକ ଅଗ୍ରାଧିକାର ଦୃଷ୍ଟିରୁ ୧୫ ଟି ଲାଭଜନକ ବନସ୍ପତିର ଚାଷ ପ୍ରଣାଳୀ ଓ ଏହାର ବ୍ୟବସାୟ ପାଇଁ ଆବଶ୍ୟକ ସୂଚନା ଏହି ପୁସ୍ତକରେ ରହିଛି । ଏହି ପୁସ୍ତକଟି ବିଭିନ୍ନ ଶିକ୍ଷା ସଂସ୍ଥା, କୃଷି କର୍ମଚାରୀ, ଗବେଷଣା ସଂସ୍ଥା, ଆୟୁର୍ବେଦ

Digitized by srujanika@gmail.com

କଲେଜ, ଔଷଧ ନିର୍ମାଣକାରୀ ସଂସ୍ଥା, ଜଡ଼ିବୁଟି ବିକ୍ରେତା, ଜଙ୍ଗଲ ବିଭାଗ, ପଞ୍ଚାୟତ ସମିତି, ମଞ୍ଜି ଉତ୍ପାଦନକାରୀ ସଂସ୍ଥା, ଗବେଷକ, ବିଦ୍ୟାର୍ଥୀ, ଆୟୁର୍ବେଦ ଓ ହୋମିଓପ୍ୟାଥି ଚିକିତ୍ସକ ଏବଂ ସମସ୍ତ ବୈଜ୍ଞାନିକମାନଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ହେବ ବୋଲି ଆଶା କରାଯାଏ ।

ଓଡ଼ିଶାର ସମସ୍ତ ସରକାରୀ ଆୟୁର୍ବେଦ ମହାବିଦ୍ୟାଳୟର ଅଧକ୍ଷ, ଅନୁଭୂତି ସଂପନ୍ନ ଅଧ୍ୟାପକ ଏବଂ ଭାରତୀୟ ଭେଷଜ ଓ ହୋମିଓପ୍ୟାଥି ନିର୍ଦ୍ଦେଶାଳୟ ଅଧୀନସ୍ଥ ଆୟୁର୍ବେଦ ନିରୀକ୍ଷକ ଓ ଅଭିଜ୍ଞ ଆୟୁର୍ବେଦ ଚିକିତ୍ସାଧିକାରୀମାନଙ୍କ ଅବଦାନ ଏବଂ ଏକ ଅଭିଜ୍ଞ ସଂପାଦକ ମଣ୍ଡଳୀ ଦ୍ୱାରା ଜନସମାଜଙ୍କର ରୁଚି ଅନୁଯାୟୀ ସହଜ ଓଡ଼ିଆ ଭାଷାରେ ସଂକଳିତ କରାଯାଇ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ ଚିକିତ୍ସାଳୟ ସମିତି, ପୁରୀ ପକ୍ଷରୁ ପ୍ରକାଶିତ ହେଉଥିବା ଏହି ପୁସ୍ତିକା ମାର୍ଗଦର୍ଶକ ହୋଇପାରିବ । ଏଥିରୁ ଲବ୍ଧ (ରୟାଲିଟି) ଧନରାଶି ଭାଗ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ ଓ ଚିକିତ୍ସାଳୟର ସର୍ବାଙ୍ଗୀନ ଉନ୍ନତି କାର୍ଯ୍ୟରେ ବିନିଯୋଗ କରାଯିବ ।

ରବିନାରାୟଣ ସେନାପତି

(ଶ୍ରୀ ରବିନାରାୟଣ ସେନାପତି)
*ସଚିବ,*
*ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ*
*ଓଡ଼ିଶା ସରକାର*

Digitized by srujanika@gmail.com

# ପ୍ରାକ୍ କଥନ

ଭାରତୀୟ ସଂସ୍କୃତିର ବିକାଶ ବନସ୍ପତି ବହୁଳ ଅରଣ୍ୟରୁ ହିଁ ସୃଷ୍ଟି ହୋଇଅଛି । ପ୍ରାଚୀନ କାଳରୁ ଅତିଥିଙ୍କର କୁଶଳତା ପ୍ରଶ୍ନ କରିବା ସମୟରେ ବୃକ୍ଷଲତା ଆଦିର କୁଶଳତା ବିଷୟରେ ମଧ ପଚାରିବାର ପରମ୍ପରା ରହି ଆସିଅଛି । ବନସ୍ପତି କୁ ଭାରତୀୟ ସାହିତ୍ୟ ରଘୁବଂଶ ଓ କୁମାରସମ୍ଭବମ୍ ଆଦିରେ ଯେତେ ଉଚ୍ଚସ୍ଥାନ ଦିଆଯାଇଅଛି, ଅନ୍ୟ କ୍ଷେତ୍ରରେ ତାହା ଦେଖିବାକୁ ମିଳେ ନାହିଁ । ଜନ ସମାଜର ହିତ ପାଇଁ ବନସ୍ପତି ନିଜ ଦେହକୁ ମହତ୍ ଉଦ୍ଦେଶ୍ୟରେ ଅର୍ପଣ କରିଥାଏ । ଏଣୁ ସେ ସର୍ବଦା ପୂଜନୀୟ ।

*"ଯୋ ଦେହମର୍ପୟତି ଚାନ୍ୟସୁଖସ୍ୟ ହେତୋଃ*

*ତସ୍ମୈ ବଦାନ୍ୟଗୁରବେ ତରବେ ନମୋଽସ୍ତୁ "*

*(ଭବଭୂତି)*

ଆୟୁର୍ବେଦରେ ଗଛପତ୍ରକୁ ଅଧିକ ମହତ୍ୱ ଦିଆଯାଇଅଛି । ସଂସାରରେ ଯେତେ ଦ୍ରବ୍ୟ ଅଛି ସେ ସମସ୍ତ ଔଷଧି କାର୍ଯ୍ୟରେ ବ୍ୟବହୃତ ହୋଇ ଆସୁଅଛି । ମହର୍ଷି ଚରକଙ୍କ ମତରେ ' 'ନାନୌଷଧି ଭୂତଂ ଜଗତି କିଂଚିଦ୍ ଦ୍ରବ୍ୟମନୁପଲଭ୍ୟତେ'' । ଆୟୁର୍ବେଦର ମୌଳିକ ଉଦ୍ଦେଶ୍ୟ, "ସୁସ୍ଥ ବ୍ୟକ୍ତିର ସ୍ୱାସ୍ଥ୍ୟ ରକ୍ଷା ଓ ରୋଗୀର ରୋଗ ଦୂରୀକରଣ" ସାର୍ଥକ କରିବା ପାଇଁ ବନସ୍ପତିର ପରିଚୟ ତଥା ବ୍ୟବହାର ଜ୍ଞାନ ଏକାନ୍ତ ଆବଶ୍ୟକ ।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଦ୍ରବ୍ୟଗୁଣ ପ୍ରଫେସର ଡ଼ା. କୃଷ୍ଣଚନ୍ଦ୍ର ଚୁନେକରଙ୍କର ମତାନୁସାରେ ପ୍ରାଚୀନ କାଳରେ ଔଷଧି ବୃକ୍ଷ ଚିହ୍ନିବା ପାଇଁ ଉପାୟ ତଥା ନାମକରଣ ବନସ୍ପତିର ସ୍ୱରୂପ ତଥା ପ୍ରୟୋଗ ଅନୁସାରେ କରାଯାଉଥିଲା । ଯେପରି ଦୁଇକାଠ ମନ୍ଥନ ଦ୍ୱାରା ଅଗ୍ନି ଉତ୍ପନ୍ନ ହେଉଥିବାରୁ ସଂପୃକ୍ତ ବୃକ୍ଷର ନାମ ଅଗ୍ନିମନ୍ଥ, ଅନେକ ରୋଗ ନଷ୍ଟକରୁଥିବାରୁ ସଂପୃକ୍ତ ବନସ୍ପତିର ନାମ ଅପାମାର୍ଗ , ଭୁଇଁ ଉପରେ ହେଉଥିବା ଏବଂ ନିମ୍ବଠାରୁ ଛୋଟ କିନ୍ତୁ ନିମ୍ବପରି ପିତା ଲାଗୁଥିବା ବନସ୍ପତିକୁ ଭୂଇଁନିମ୍ବ, ଯାହାର ସେବନ ଦ୍ୱାରା ବୃଦ୍ଧ ତରୁଣ ଅବସ୍ଥାକୁ ପ୍ରାପ୍ତକରେ ସେହି ବନସ୍ପତିର ନାମ ପୁନର୍ନବା ଏବଂ ଯାହାର ମୂଳ ମାଟି ଗଭୀରକୁ ଯାଇଥାଏ - ପାତାଳ ଗରୁଡ଼, ସେହିପରି ଭୂଇଁଅଁଳା ଇତ୍ୟାଦି ସମସ୍ତ ବନସ୍ପତିର ନାମକରଣର ସାର୍ଥକତା ରହିଅଛି ।

Digitized by srujanika@gmail.com

କେତେକ ପୁସ୍ତକାକାର ବନସ୍ପତି ମାନଙ୍କର ଆକାର, ସ୍ଥାନ, ଗୁଣ, କର୍ମ ତଥା ଉପଯୋଗ ଅନୁସାରେ ମନଇଚ୍ଛା ନାମକରଣ କରିଦେବା ଦ୍ୱାରା ଗୋଟିଏ ବନସ୍ପତିର ଏକାଧିକ ନାମ ହୋଇଯିବା ଫଳରେ ଅସଲି ବନସ୍ପତିକୁ ଚିହ୍ନିବା ପାଇଁ ସନ୍ଦିଗ୍ଧତା ସୃଷ୍ଟି ହୋଇଅଛି । ଏହି ସନ୍ଦିଗ୍ଧତା ଦୂର କରିବାପାଇଁ ତଥା ବନସ୍ପତି ସମ୍ବନ୍ଧରେ ସଚେତନତା ସୃଷ୍ଟି କରିବାପାଇଁ ପ୍ରତ୍ୟେକ ଗଛର ଚିତ୍ର ସହିତ ବୈଜ୍ଞାନିକ ପଦ୍ଧତିରେ ବର୍ଣ୍ଣନା (Botanical Description) ନିତ୍ୟାନ୍ତ ଆବଶ୍ୟକ ହୋଇପଡ଼ିଛି । ଆୟୁର୍ବେଦ ବିଦ୍ୱାନମାନେ ସମସ୍ତ ବନସ୍ପତିର ସ୍ଥାନ ଅନୁସାରେ ତୁଳନାତ୍ମକ, ନାମରୂପାତ୍ମକ ତଥା ଗୁଣକର୍ମ ଭିତ୍ତିକ ଗବେଷଣା କରି ଔଷଧି ପ୍ରୟୋଗ କ୍ଷେତ୍ରରେ ପ୍ରୟୋଗସିଦ୍ଧ ଔଷଧିଦ୍ରବ୍ୟଗୁଡ଼ିକର ପୁନଃ ପ୍ରୟୋଗକରି ଲାଭ ଉଠାଇବାପାଇଁ ଉପଦେଶ ଦେଇ ଆସିଛନ୍ତି ।

ପ୍ରାଚୀନ କାଳରେ ଅଧିକାଂଶ ବ୍ୟକ୍ତି ବନସ୍ପତିମାନଙ୍କର ଗୁଣ କର୍ମ ଓ ପ୍ରୟୋଗ ସମ୍ବନ୍ଧରେ ସଚେତନ ଥିଲେ । ତେଣୁ ଔଷଧି ବୃକ୍ଷକୁ ନଷ୍ଟ ନ କରି ବିଭିନ୍ନ ମହତ୍ କାର୍ଯ୍ୟରେ ଉପଯୋଗ କରୁଥିଲେ । ବିଭିନ୍ନ ପର୍ବପର୍ବାଣୀମାନଙ୍କରେ ସେଗୁଡ଼ିକର ପୂଜାପାଠର ବ୍ୟବସ୍ଥା ଅଦ୍ୟାବଧି ପ୍ରଚଳିତ ଅଛି । ରୋଗୀର ରୋଗ ଦୂରୀକରଣପାଇଁ ସଂଗ୍ରହ କରାଯାଉଥିବା ବନସ୍ପତିକୁ ନିୟମାନୁସାରେ ପ୍ରଥମ ଦିନ ମନ୍ତ୍ରୋପଚାର ପୂର୍ବକ ପୂଜା, ଅର୍ଚ୍ଚନା ଏବଂ ଆବାହନ କରାଯାଉଥିଲା । ଦ୍ୱିତୀୟ ଦିନ ଆବଶ୍ୟକତା ଅନୁସାରେ ଅଭିଳାଷିତ କାର୍ଯ୍ୟ ପାଇଁ ଆଜ୍ଞାନେଇ ଏବଂ ଚିକିତ୍ସକ ନିଜର ପୂଣ୍ୟବଳ ଔଷଧବୃକ୍ଷକୁ ସମର୍ପଣ କରି ଔଷଧି କାର୍ଯ୍ୟ ବ୍ୟବହାରରେ ଆଣୁଥିଲା । ଏହି ଭାବନା ତଥା ବନସ୍ପତି ପ୍ରତି ମର୍ଯ୍ୟଦାଦ୍ୱାରା ବଣ୍ୟ ସମ୍ପଦର ଦୁରୂପଯୋଗ ହୋଇପାରୁ ନଥିଲା । ଫଳରେ ଔଷଧିବୃକ୍ଷ ପ୍ରତି ସ୍ନେହ, ଭକ୍ତି ଏବଂ ମାନ୍ୟତା ରହୁଥିଲା । ବର୍ତ୍ତମାନ ବନସ୍ପତି ଗୁଡ଼ିକର ଉପଯୁକ୍ତ ଚିହ୍ନଟର ଅଭାବ ତଥା ଗୁଣ, କର୍ମ ଓ ବ୍ୟବହାର ବିଧି ଜାଣି ନପାରି ସର୍ବତ୍ର ଔଷଧିୟ ବୃକ୍ଷଲତାକୁ ନଷ୍ଟ କରି ଦିଆଯାଉଅଛି ।

ବାଡ଼ିବଗିଚାରେ ବନସ୍ପତି ରୋପଣ କରି ପ୍ରାଥମିକ ଚିକିତ୍ସାରେ ଏହାର ପ୍ରୟୋଗପାଇଁ ଏହି ପୁସ୍ତକ ଜନସମାଜର ମାର୍ଗ ଦର୍ଶନ କରିପାରିବ । ଏଥିରେ ପ୍ରଥମ ପର୍ଯ୍ୟାୟରେ ୬୨ ଟି ବନସ୍ପତିର ସ୍ଥାନିକନାମ, ଆୟୁର୍ବେଦ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ସଂସ୍କୃତ ନାମ ଏବଂ ବୈଜ୍ଞାନିକ ନାମ , ହିନ୍ଦୀ ତଥା ଇଂରାଜୀ ନାମଗୁଡ଼ିକ ଲେଖାଯାଇଅଛି । ଯଥାସମ୍ଭବ ଔଷଧୀୟ ଦ୍ରବ୍ୟର ବ୍ୟବହୃତ ଅଂଗ, ରୋଗ ଏବଂ ଔଷଧୀୟ ବ୍ୟବହାର ସମ୍ବନ୍ଧରେ ଦୈନନ୍ଦିନ କାର୍ଯ୍ୟରେ ଉପଯୋଗ ପାଇଁ ସମ୍ୟକ୍

Digitized by srujanika@gmail.com

ଧାରଣା ଦିଆଯାଇଛି । ସ୍ଥାନିକ ପ୍ରଚଳିତ ନାମ ଗୁଡ଼ିକ ଅକାରାଦିକ୍ରମରେ ସଜାଇ ଲେଖାଯାଇଛି ଏବଂ ରୋଗଗୁଡ଼ିକର ବର୍ଣ୍ଣନା ତଥା ବ୍ୟବହାରବିଧି ଆୟୁର୍ବେଦ ଗ୍ରନ୍ଥ ଅନୁସାରେ ଦର୍ଶାଯାଇଛି । ପୁସ୍ତକର ଶେଷଭାଗରେ କେତେକ ସାଧାରଣ ରୋଗର ତୁଟୁକା(ପ୍ରାଥମିକ) ଚିକିତ୍ସା ବିଷୟରେ ପରାମର୍ଶ ଦିଆଯାଇଅଛି । ଏହାପରେ କେତେକ ରୋଗ ଓ ଆୟୁର୍ବେଦ ଚିକିତ୍ସା ସମ୍ବନ୍ଧୀୟ ଜ୍ଞାନକୁ ଓଡ଼ିଆ ଲୋକଗୀତ ମାଧ୍ୟମରେ ମଧ୍ୟ ପ୍ରକାଶ କରାଯାଇଛି । ଯଥା ସମ୍ଭବ ଓଡ଼ିଶାର ଜନ ସମାଜ, ଆୟୁର୍ବେଦପ୍ରେମୀ, ଚିକିତ୍ସକ,ପାରମ୍ପରିକ ବୈଦ୍ୟ, ଚେରମୂଳଆଦି ସମ୍ବନ୍ଧରେ ବ୍ୟାପାର କରୁଥିବା ବ୍ୟକ୍ତି ଏବଂ ଔଷଧ ନିର୍ମାଣକାରୀ ସଂସ୍ଥାମାନେ ପଢ଼ି ବୁଝି ବ୍ୟବହାରରେ ଲଗାଇବା ପାଇଁ ପ୍ରଯତ୍ନ କରାଯାଇଛି । ଅଧିକାଂଶ ସ୍ଥାନରେ ସ୍ଥାନୀୟ ଭାଷାର ପ୍ରୟୋଗ ମଧ୍ୟ କରାଯାଇଛି । ବିଭିନ୍ନ ଆୟୁର୍ବେଦ ପୁସ୍ତକରୁ ସଂଗୃହିତ ଏବଂ ଅନୁଭୂତି ପ୍ରୟୋଗ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଅଛି । ଆୟୁର୍ବେଦୀୟ ପାରିଭାଷିକ ଶବ୍ଦ ଗୁଡ଼ିକର ସାମାନ୍ୟ ପରିଭାଷା ଏବଂ କେତେକ ରୋଗର ଇଂରାଜୀ ନାମ ଓ ସାମାନ୍ୟ ଲକ୍ଷଣ ପାଠକଙ୍କ ବୋଧଗମ୍ୟ ପାଇଁ ଦିଆଯାଇଅଛି । ବ୍ୟବସାୟିକ ଅଗ୍ରାଧିକାର ଦୃଷ୍ଟିରୁ କେତେକ ବନସ୍ପତିର ଚାଷ ପ୍ରଣାଳୀ ସମ୍ପର୍କୀୟ ସୂଚନା ଏହି ପୁସ୍ତକରେ ଯଥା ସମ୍ଭବ ଦିଆଯାଇଅଛି । ଏହା ସହିତ ବନସ୍ପତି ଓ ଆୟୁର୍ବେଦ ସମ୍ବନ୍ଧରେ ଅଧିକ କିଛି ଜାଣିବା ପାଇଁ କେତେକ ଆବଶ୍ୟକ ସୂଚନା ମଧ୍ୟ ରହିଅଛି ।

ଓଡ଼ିଶାର ଗ୍ରାମାଞ୍ଚଳରେ ପ୍ରାଚୀନ ପରମ୍ପରା ଭିତ୍ତିକ ବୈଦ୍ୟମାନେ ଏକାଦଶ ଶତାବ୍ଦୀରୁ ତାଳପତ୍ର ପୋଥିରେ ଔଷଧିବୃକ୍ଷର ଚିକିତ୍ସା ଶୈଳୀ ଲିପିବଦ୍ଧ କରିଯାଇଛନ୍ତି । ଓଡ଼ିଶାର ବିଭିନ୍ନ ସ୍ଥାନରେ ହାରାହାରି ୩୮,୦୦୦ ସଂଗୃହିତ ପୋଥି ମଧ୍ୟରୁ କେବଳ ୭୪୩ ଟି ଆୟୁର୍ବେଦ ପୋଥି ଓଡ଼ିଶାର ରାଜ୍ୟ ସଂଗ୍ରହାଳୟରେ ରହିଅଛି । ଏହି ପୋଥିଗୁଡ଼ିକୁ ଅନୁଶୀଳନ କରି ଦେଖାଯାଇଛି ଯେ, ଓଡ଼ିଶାର ବୈଦ୍ୟମାନେ ସ୍ଥାନିକ ଗଛପତ୍ରକୁ ପ୍ରାଧାନ୍ୟଦେଇ ସ୍ଥାନିକ ନାମରେ ବନୌଷଧିର ବର୍ଣ୍ଣନା କରି ଗୁଣ କର୍ମ ପ୍ରୟୋଗ ପାଇଁ ନିର୍ଦ୍ଦେଶ ଦେଇଅଛନ୍ତି । ବର୍ତ୍ତମାନ ଗବେଷଣା ଦ୍ୱାରା ସ୍ୱଦେଶୀ ଚିକିତ୍ସା ପଦ୍ଧତିର ବିକାଶ ତାଳପତ୍ର ପୋଥିରୁ ହିଁ ହୋଇପାରିବ ।

ଏହି ଭାରତୀୟ ଦେଶୀ ଚିକିତ୍ସାର ମହତ୍ୱ ପୁରପଲ୍ଲୀଠାରୁ ଆରମ୍ଭ କରି ସହରାଞ୍ଚଳରେ ସମସ୍ତେ ହୃଦୟଙ୍ଗମ କରିସାରିଲେଣି । ଏଣୁ ଔଷଧି ବୃକ୍ଷଲତାର ଚିହ୍ନଟ, ରୋପଣ , ସଂରକ୍ଷଣ ଓ ବ୍ୟବହାର ଜରୁରୀ ହୋଇପଡ଼ିଛି । ପ୍ରାଥମିକ ଚିକିତ୍ସାର ଉପଯୋଗ ପାଇଁ ବାଡ଼ିବଗିଚାରେ ଓ ଘର ନିକଟରେ ଏକ ଛୋଟ ଔଷଧ ଉଦ୍ୟାନ

Digitized by srujanika@gmail.com

ସୃଷ୍ଟି କରିବାପାଇଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଏବଂ ଭାରତୀୟ ଭେଷଜ ଓ ହୋମିଓପ୍ୟାଥି ନିର୍ଦ୍ଦେଶାଳୟ, ଓଡ଼ିଶା ଜନସାଧାରଣଙ୍କର ଦିଗ୍‌ଦର୍ଶନ ପାଇଁ ସତତ ପ୍ରଯତ୍ନ କରୁଛନ୍ତି । ଏହାର ବ୍ୟବହାର ଦ୍ୱାରା ପରିବେଶର ସୁରକ୍ଷା ସହିତ ସମସ୍ତ ଜନସମାଜ ସାଧାରଣ ରୋଗ ଗୁଡ଼ିକ ପାଇଁ ଆଧୁନିକ ଔଷଧର ଦ୍ୱାରସ୍ଥ ନହୋଇ ନିଜକୁ ସୁସ୍ଥ ରଖିପାରିବେ ।

ବିଜୟ କୁମାର ଦାସ

(ଶ୍ରୀ ବିଜୟ କୁମାର ଦାସ)
*ନିର୍ଦ୍ଦେଶକ*
*ଭାରତୀୟ ଭେଷଜ ଓ ହୋମିଓପ୍ୟାଥି*
*ନିର୍ଦ୍ଦେଶାଳୟ, ଓଡ଼ିଶା, ଭୁବନେଶ୍ୱର*

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

Digitized by srujanika@gmail.com

**ALL RIGHTS RESERVED**

***No portion of this book shall be published or reproduced in any manner without the express permission of Gopabandhu Ayurveda College Hospital Society, VIP Road, Puri-752002***

***The royalty share shall be utilised for development of Gopabandhu Ayurveda College Hospital, Puri-2***

Digitized by srujanika@gmail.com

# ଅର୍ଜୁନ

## TERMINALIA ARJUNA (COMBRETACEAE)

ସଂସ୍କୃତ ନାମ : ଅର୍ଜୁନ, କକୁଭ, ନଦୀସର୍ଜ ; ହିନ୍ଦୀ: କହୁ ;

ଇଂରାଜୀ : Arjuna

ଉପ୍ତତ୍ତିସ୍ଥଳ: ଓଡ଼ିଶା, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ, ଦକ୍ଷିଣବିହାର, ଉତ୍ତରପ୍ରଦେଶ ଆଦିରେ ଦେଖାଯାଏ । ନଦୀନାଳ ନିକଟରେ ଏବଂ ଜଙ୍ଗଲମାନଙ୍କରେ ଏହା ବିଶେଷତଃ ହୋଇଥାଏ ।

ବନସ୍ପତି ବର୍ଣ୍ଣନା: ଏହି ବୃକ୍ଷର ଉଚ୍ଚତା ୧୫-୨୦ ମିଟର । ପତ୍ର: ପିଜୁଳି ପତ୍ର ପରି । ଫୁଲ: ସାମାନ୍ୟ ହଳଦିଆ ରଙ୍ଗର (ଛୋଟ ଛୋଟ) । ଫଳ: କରମଙ୍ଗା ସଦୃଶ କିନ୍ତୁ ଆକାରରେ ଛୋଟ । କଞ୍ଚା ଅବସ୍ଥାରେ ସବୁଜ ଓ ପକ୍ୱାବସ୍ଥାରେ ଗାଢ଼ ଲାଲ୍ ବର୍ଣ୍ଣ କିମ୍ବା ଈଷତ୍ ହଳଦିଆ ହୋଇଥାଏ । ଏହା ଭିତରେ ମଞ୍ଜି ନଥାଏ । ଏହାହିଁ ଅର୍ଜୁନ ଗଛର ମଞ୍ଜି ଅଟେ ।

ପ୍ରଧାନ ଗୁଣ କର୍ମ: ଏହା ହୃଦ୍‌ରୋଗ, କାଶ, ପ୍ରଦର, ପୁରାତନ ଜ୍ୱର ଓ ଦୁର୍ବଳତାରେ ବ୍ୟବହୃତ ହୁଏ ।

ଔଷଧୀୟ ଉପଯୋଗୀ ଅଂଶ : ଛାଲି

ମାତ୍ରା: ସ୍ୱରସ : ୧୦-୨୦ ମି.ଲି.,
କ୍ୱାଥ : ୫୦-୧୦୦ ମି.ଲି. ,
ଚୂର୍ଣ୍ଣ: ୩ - ୬ ଗ୍ରାମ୍

## ଔଷଧୀୟ ବ୍ୟବହାର

୧. ହୃଦ୍‌ରୋଗ, ଉଚ୍ଚରକ୍ତଚାପ : ଅର୍ଜୁନଛାଲି ୧୦ ଗ୍ରାମ୍ ଗୁଣ୍ଡ କରି ୮୦ ମି.ଲି. କ୍ଷୀର ସହ ୩୨୦ ମି.ଲି ପାଣି କ୍ଷୀରପାକ

Digitized by srujanika@gmail.com

ବିଧିରେ ଏକତ୍ର ମିଶାଇ ସିଝାଇବ । ଅବଶେଷ ୮୦ ଗ୍ରାମ୍ ରେ ୧୦ ଗ୍ରାମ୍ ମିଶ୍ରି ଓ ୫ଟି ଗୁଳୁରାତି ମଞ୍ଜି ଚୂର୍ଣ୍ଣ ମିଶାଇ ପିଇବାକୁ ଦେବ । ଏହିପରି ୩-୬ ମାସ ଦେବ । ଉଚ୍ଚ ରକ୍ତଚାପରେ ମଧ୍ୟ ଏହା ଦିଆଯାଏ ।

୨. ଛାତି ଥରିଲେ — ଏକ କପ୍ ଟମାଟୋ ରସରେ ୩ ଗ୍ରାମ୍ ଅର୍ଜୁନ ଛାଲି ଚୂର୍ଣ୍ଣ ମିଶାଇ ଦିନକୁ ୨ ଥର କରି ୩ ମାସ ସେବନ କରିବ ।

୩. ରକ୍ତାତିସାର (ନାଳରକ୍ତଝାଡ଼ା) — ଏହାର ଛାଲି ଗୁଣ୍ଡ (୧୦ ଗ୍ରାମ୍) କ୍ଷୀରରେ ବାଟି ସେଥିରେ ମହୁ ମିଶାଇ ଦିନକୁ ୨ ଥର କରି ସେବନ କରିବ ।

୪. ପୁରାତନ ଜ୍ୱର — ଏହାର ଛାଲି ଚୂର୍ଣ୍ଣ (୫ ଗ୍ରାମ୍) କୁ ଗୁଡ଼ ସରବତ କରି ୫-୭ ଦିନ ପିଇବାକୁ ଦେବ ।

୫. ଅସ୍ଥିଭଗ୍ନ (ହାଡ଼ ଭାଙ୍ଗିଗଲେ) : ଏହାର ଛାଲି ଚୂର୍ଣ୍ଣ (୫ଗ୍ରାମ୍) ରେ ଘିଅ ଓ ମିଶ୍ରି ମିଶାଇ ସେବନ କରି ପରେ କ୍ଷୀର ପିଇଲେ ହାଡ଼ ଭାଙ୍ଗିଯାଇଥିଲେ ଯୋଡ଼ିଯାଏ । ଏହା ସହିତ ଛାଲି ଗୁଣ୍ଡରେ ଘିଅ ମିଶାଇ ସ୍ଥାନିକ ଲେପ କରିବ ।

୬. କଙ୍କଡ଼ାବିଛା କାମୁଡ଼ିଲେ : ଏହାର ଛାଲିକୁ ବାଟି ସ୍ଥାନିକ ଲେପ କରିବ ।

ପ୍ରମୁଖ ଔଷଧ — ଅର୍ଜୁନାରିଷ୍ଟ, ଅର୍ଜୁନକ୍ଷୀରପାକ, ନାଗାର୍ଜୁନାଭ୍ର, ପାର୍ଥାଦ୍ୟରିଷ୍ଟ ।

❋ ❋ ❋

Digitized by srujanika@gmail.com

# ଅଦା

## ZINGIBER OFFICINALE (ZINGIBERACEAE)

ସଂସ୍କୃତ ନାମ: ଆର୍ଦ୍ରକ, ଶୃଙ୍ଗବେର; ହିନ୍ଦୀ: ଅଦ୍‌ରକ୍ ;

ଇଂରାଜୀ : Ginger root

| | |
|---|---|
| ଉପଲବ୍ଧିସ୍ଥଳ | ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ଚାଷ କରାଯାଏ । |
| ବନସ୍ପତି ବର୍ଣ୍ଣନା | ୩୦-୯୦ ସେ.ମି ଉଚ୍ଚତା ବିଶିଷ୍ଟ ବନସ୍ପତି । ପତ୍ର ବାଉଁଶ ପରି କିନ୍ତୁ ଛୋଟ । ଫୁଲ ଓ ଫଳ ବହୁତ କମ୍ ଦେଖାଯାଏ । ମୂଳରେ ହେଉଥିବା କନ୍ଦକୁ ଅଦା କୁହାଯାଏ । ଏଥିରୁ ଶୁଣ୍ଠି ପ୍ରସ୍ତୁତ କରାଯାଇଥାଏ । |
| ପ୍ରଧାନ ଗୁଣ କର୍ମ | ଦୀପନ, ପାଚନ, କଫଘ୍ନ ଓ ରୁଚିକର |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ କନ୍ଦ |
| ମାତ୍ରା | ଅଦା ସ୍ୱରସ: ୫-୧୦ ମି.ଲି.<br>ଶୁଣ୍ଠି ଚୂର୍ଣ୍ଣ:୧-୨ ଗ୍ରାମ୍ |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ତରଳ ଝାଡ଼ା | ନାଭି ଚାରିପାଖରେ ଅଁଟାକୁ ବାଟି ବନ୍ଧ ପରି କରି ତାହା ମଧ୍ୟରେ ଅଦାରସ ରଖିବ । |
| ୨. ଅମାତିସାର | ୨-୩ ଗ୍ରାମ୍ ଶୁଣ୍ଠି ଚୂର୍ଣ୍ଣ ଗରମ ପାଣି ସହିତ ୩ ଥର ସେବନ କରିବ । |
| ୩. ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଓ ଅରୁଚି | ଖାଦ୍ୟ ସେବନର ଅଧଘଣ୍ଟା ପୂର୍ବରୁ ଅଦା ଓ ସୈନ୍ଧବ ଲବଣ ସେବନ କରିବ । ଅଥବା ଭଜା ଜିରା ଗୁଣ୍ଡ ୨ ଗ୍ରାମ୍ ସୈନ୍ଧବ ଲବଣ ଅଧ ଗ୍ରାମ୍ ଓ ଅଦାରସ ୧ ଚାମଚ ଏକାଠି ମିଶାଇ ଖାଇବା ପରେ ସେବନ କରିବ । |

Digitized by srujanika@gmail.com

୪. କାଶ, ଶ୍ୱାସ ଓ କଫରୋଗ — ଅଦାରସ ୧ ଚାମଚ ମହୁ ସହିତ ମିଶାଇ ଦିନକୁ ୩ ଥର ପିଇବ କିମ୍ବା ୧ ଚାମଚ ଅଦାରସ ସହିତ ୩-୪ଟି ଗୋଲମରିଚ ଓ ମହୁ ମିଶାଇ ସେବନ କରିବ ।

୫. ସ୍ୱରଭେଦ — ୫-୧୦ ମି.ଲି. ଅଦାରସ ୬-୧୨ ଗ୍ରାମ୍ ପୁରୁଣା ଗୁଡ଼ ସହିତ ଦିନକୁ ୨ ଥର ସେବନ କରିବ ।

୬. ଜଳୋଦର — ଏହାର ରସ ୨ ଚାମଚ ପ୍ରତି ୧ ଘଣ୍ଟା ବ୍ୟବଧାନରେ ଦେଲେ ପରିସ୍ରା ମାତ୍ରା ବଢ଼ାଇ ଉଦରରେ ଥିବା ଜଳମାତ୍ରା ହ୍ରାସ କରାଇଥାଏ ।

୭. ବୃଷଣ ଶୋଥ — ଅଧା ଚାମଚ ଅଦା ରସ ସହିତ ଅଧା ଚାମଚ ମହୁ ବା ସୋରିଷ ତେଲ ଅଳ୍ପ ଉଷୁମ କରି ଦିନକୁ ୩ ଥର କରି ସେବନ କରିବ ।

୮. ଶୀତପିତ୍ତ — ପୁରୁଣା ଗୁଡ଼ (୩ଗ୍ରାମ୍) ସହିତ ଏହାର ରସ ଦେଢ଼ ଚାମଚ ଦିନକୁ ୩ ଥର ସେବନ କରିବ ।

୯. କର୍ଣ୍ଣଶୂଳ — ଅଦାରସ ଅଳ୍ପ ଉଷୁମ କରି ୩-୪ ଟୋପା କାନରେ ପକାଇବେ । ଅଥବା ଅଦାରସକୁ ବାଦାମ କିମ୍ବା ସୋରିଷ ତେଲ ସହିତ ମିଶାଇ ୫ ମିନିଟ୍ ପର୍ଯ୍ୟନ୍ତ ଗରମ କରି ଅଳ୍ପ ଉଷୁମ ଅବସ୍ଥାରେ ୨-୪ ଟୋପା କାନରେ ପକାଇବ ।

ପ୍ରମୁଖ ଔଷଧ — ଆର୍ଦ୍ରକ ଖଣ୍ଡ, ସମଶର୍କରାଚୂର୍ଣ୍ଣ, ସୌଭାଗ୍ୟ ଶୁଣ୍ଠିଖଣ୍ଡ ।



Digitized by srujanika@gmail.com

# ଅନନ୍ତ ମୂଳ

## HEMIDESMUS INDICUS (ASCLEPIADACEAE)

ସଂସ୍କୃତ ନାମ : ଗୋପବଲ୍ଲୀ, ସାରିବା, ଶ୍ୟାମା; ହିନ୍ଦୀ: ଅନନ୍ତମୂଳ ;

ଇଂରାଜୀ : Indian Sarsaparilla.

| | |
|---|---|
| ଉପ୍ତିସ୍ଥଳ. | ଏହା ବାଡ଼ ଆଦି ସ୍ଥାନମାନଙ୍କରେ ଲତା ଆକାରରେ ମାଡ଼ିଥିବାର ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ଲତା ଜାତୀୟ ବନସ୍ପତି । ଏହାର କାଣ୍ଡ ପତଳା, ଗୋଲ, ଚିକ୍କଣ ଓ କ୍ଷତ ହେଲେ କ୍ଷୀର ବାହାରେ ପ୍ରତ୍ୟେକ ପବ ମୋଟା ହୋଇଥାଏ । ପତ୍ର: ଉପର ଭାଗ ଚିକ୍କଣ ଓ ସାମାନ୍ୟ ଲୋମଯୁକ୍ତ । ଫୁଲ : ଛୋଟ, ବାହାରୁ ସବୁଜ ଓ ଭିତର ବାଇଗଣୀ ରଙ୍ଗ । ମୂଳ: ମୋଡ଼ି ହୋଇଥାଏ ଏବଂ କର୍ପୁର ପରି ସୁଗନ୍ଧଯୁକ୍ତ । |
| ପ୍ରଧାନ ଗୁଣ କର୍ମ | ଅଗ୍ନିବର୍ଦ୍ଧକ, କାଶ, ଶ୍ୱାସ, ଜ୍ୱର ଓ ରକ୍ତ ପ୍ରଦରରେ ବ୍ୟବହାର କରାଯାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ |
| ମାତ୍ରା | ଫାଣ୍ଟ: ୫୦-୧୦୦ ମି.ଲି. । କଲ୍କ : ୫-୧୦ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅର୍ଶ | ମାଟି ପାତ୍ରରେ ଅନନ୍ତମୂଳ ଚୂର୍ଣ୍ଣ ୧୦ ଗ୍ରାମ୍ ଓ ଚହ୍ଲାଦହି ପ୍ରତିଦିନ ରାତ୍ରିରେ ରଖି ସକାଳେ ପିଇବ । |
| ୨. ଶ୍ୱାସ | ଏହାର ମୂଳ ୨୦ ଗ୍ରାମ୍ ନେଇ କ୍ୱାଥ ପ୍ରସ୍ତୁତ କରି ଘିଅ ସହିତ ନିୟମିତ ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ବ୍ରଣ, ଘା | ଏହାର ମୂଳ କିମ୍ବା ପତ୍ର କ୍ୱାଥ ଦ୍ୱାରା ବ୍ରଣ ପ୍ରକ୍ଷାଳନ କରିବ । |
| ୪. ଫୁଲା-ଦରଜରେ | ମୂଳର କଳ୍କ ସ୍ଥାନିକ ଲେପ କରିବ । |
| ୫. ମୂଷାବିଷ | ଏହାର ମୂଳ ୫ ଗ୍ରାମ୍ ଘିଅରେ ଭାଜି ୩ ଦିନ ସେବନ କରିବ । |
| ପ୍ରମୁଖ ଔଷଧି | ଅନନ୍ତମୂଳ ସାଲ୍‌ସା, ସାରିବାଦ୍ୟାବଲେହ, ସାରିବାଦ୍ୟାସବ । |

❋ ❋ ❋

Digitized by srujanika@gmail.com

# ଅପରାଜିତା

## CLITORIA TERNATEA ( FABACEAE)

ସଂସ୍କୃତ ନାମ: ଆସ୍ଫୋତା, ଗିରିକର୍ଣ୍ଣିକା ; ହିନ୍ଦୀ : କୋୟଲ୍ ;

ଇଂରାଜୀ : Longed Leaved Clitoria.

| | |
|---|---|
| ଉପ୍ତିସ୍ଥଳ | ବାଡ଼ି, ବଗିଚା, ମନ୍ଦିର ପ୍ରାଙ୍ଗଣ ଆଦିରେ ସ୍ୱତଃ ହୋଇଥାଏ କିମ୍ବା ରୋପଣ କରାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ପତଳା କାଣ୍ଡଯୁକ୍ତ ଆରୋହୀଲତା । ବର୍ଷା ଦିନରେ ବହୁଳ ଭାବରେ ଦେଖାଯାଏ ଏବଂ ଯତ୍ନରେ ରଖିଲେ ବର୍ଷତମାମ ରହିଥାଏ । ପତ୍ର: ସଂଯୁକ୍ତ ଓ ପକ୍ଷଯୁକ୍ତ, ଫୁଲ:ନୀଳ ଓ ଧଳା ରଙ୍ଗ, ଶାମୁକାପରି, ଫଳ : ଶିମ୍ବପରି । |
| ପ୍ରଧାନ ଗୁଣ କର୍ମ | କଫନାଶକ, ଜ୍ୱରଘ୍ନ, ଉଦରଗତ ରୋଗ, ଗୁଳ୍ମ, ମୂତ୍ର ରୋଗ, କୃମି, ଉନ୍ମାଦ, ଅପସ୍ମାର, ଗଳଗଣ୍ଡ,ଗଣ୍ଡମାଳା, ଶୋଥ, ଚର୍ମରୋଗ, ଓ ସର୍ପ ବିଷରେ ଆକ୍ରାନ୍ତ ହୋଇଥିବା ବ୍ୟକ୍ତିଙ୍କ ଠାରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ଫୁଲ, ପତ୍ର ଓ ମଞ୍ଜି |
| ମାତ୍ରା | ଚୂର୍ଣ୍ଣ ୩-୫ ଗ୍ରାମ୍, କ୍ୱାଥ ୫୦-୧୦୦ ମି.ଲି. |

### ଔଷଧୀୟ ବ୍ୟବହାର (ନୀଳପୁଷ୍ପ ଅପରାଜିତା)

| | |
|---|---|
| ୧. ଶୋଥ | ଏହାର ମୂଳଚୂର୍ଣ୍ଣ ୩ ଗ୍ରାମ୍ ଦିନକୁ ୨ ଥର କରି ୨୧ ଦିନ ସେବନ କରିବ । |
| ୨. ବାତରୋଗ ଓ ଗୋଡ଼ ଫୁଲାରେ (ଫାଇଲେରିଆ) : | ଏହାର ମୂଳକୁ ବାଟି ସ୍ଥାନିକ ଲେପ କରିବ । |
| ୩. ଅଧାକପାଳି ମୁଣ୍ଡବ୍ୟଥା : | ମୂଳର ସ୍ୱରସ ୨-୪ ଟୋପା ଦିନକୁ ୨ ଥର |

Digitized by srujanika@gmail.com

| | |
|---|---|
| | କରି ନାକରେ ପକାଇବ । ଏହିପରି ୭ ଦିନ କରିବ । |
| ୪. ପୁରାତନ ଜ୍ୱରରେ | ସମୁଦାୟ ଲତାକୁ କ୍ୱାଥ ପ୍ରସ୍ତୁତ କରି ୫୦ ମି.ଲି. ମାତ୍ରାରେ ପ୍ରତିଦିନ ପିଇବ । ଏହିପରି ଦିନକୁ ୨ ଥର ୭ ଦିନ ପିଇବ । |
| ୫. କଫ ରୋଗ | ଏହାର ମୂଳ ୫ ଗ୍ରାମ୍‌କୁ ଅଧାକପ୍ କ୍ଷୀର ସହିତ ବାଟି ଦିନକୁ ୨ ଥର ପିଇବାକୁ ଦେବ । |
| ୬. କାନର ଚାରିପାଖ ଗ୍ରନ୍ଥି : ଫୁଲିଯାଇଥିଲେ | ଏହାର(୩/୪ ଟି) ପତ୍ରକୁ ସୈନ୍ଧବଲୁଣ ସହିତ ମିଶାଇ ଲେପ କରିବ । |
| ୭. ଧ୍ୱଜଭଙ୍ଗ | ଧଳାପୁଷ୍ପ ଅପରାଜିତାର ୫ ଟି ପତ୍ର, କ୍ଷୀର ସହିତ ସିଝାଇ ସକାଳେ ସେବନ କରିବ । |



Digitized by srujanika@gmail.com

# ଅପାମାର୍ଗ (ଅପାମାରଙ୍ଗ)

## ACHYRANTHES ASPERA (AMARANTHACEAE)

ସଂସ୍କୃତ ନାମ : ଅଧଃଶଲ୍ୟ, ଖରମଞ୍ଜରୀ, ଶିଖରୀ ; ହିନ୍ଦୀ : ଚିରଚିରା ;

| | |
|---|---|
| ଉପ୍ତତ୍ତି ସ୍ଥଳ | ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳ, ରାସ୍ତାକଡ଼, ବାଡ଼ି, ବଗିଚାରେ ପ୍ରଚୁରଭାବେ ସ୍ୱୟଂ ହୋଇଥାଏ । |
| ବନସ୍ପତି ବର୍ଣ୍ଣନା | ବର୍ଷାଋତୁ ପ୍ରାରମ୍ଭରେ ସ୍ୱୟଂ ଅଙ୍କୁରିତ ହୋଇ ଶୀତଋତୁ ମଧ୍ୟଭାଗ ସୁଦ୍ଧା ଏହା ରହେ । ଉଚ୍ଚତା-୧ ମିଟର । ଶାଖା:ରେଖାକାର ଓ ପବଯୁକ୍ତ । ପତ୍ର: ଅଣ୍ଡାକାର ଓ ଗୋଲ, ଅଗ୍ରଭାଗ ଲମ୍ବା, ଲୋମଯୁକ୍ତ, କର୍କଶ ଏବଂ ଅଗ୍ରଭାଗ ମୋଟା ଏବଂ ଏହା ତଳକୁ ଝୁଲି ରହିଥାଏ । ଫୁଲ : ସାମାନ୍ୟ ଲାଲ୍, ଗୋଲାପି ଏବଂ ହଳଦିଆ ରଙ୍ଗର ଫୁଲ ହୋଇଥାଏ । ଫଳ: କଣ୍ଟାଯୁକ୍ତ, ଛୋଟ ଓ ଓଲଟା ଲାଗିଥାଏ । ଗ୍ରୀଷ୍ମ ଋତୁରେ ପରିପକ୍ୱ ହୋଇ ଶୁଖିଯାଏ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ, ତିକ୍ତ, କଟୁ ଓ ତୀକ୍ଷ୍ଣ ଗୁଣ ବିଶିଷ୍ଟ, ଅଗ୍ନିଦୀପକ, ରଚିକର, ପିତ୍ତ ବିରେଚକ, ମୂତ୍ର ଜନକ, କୃମିଘ୍ନ, ବିଷ ଦୋଷନାଶକ ଓ ଶିରୋବିରେଚକ ଅଟେ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ,ପତ୍ର,ମଞ୍ଜି, ଓ ସମସ୍ତ ଅଂଶ |
| ମାତ୍ରା : | ସ୍ୱରସ: ୧୦-୨୦ ମି.ଲି, କ୍ଷାର : ୫୦୦ ମି.ଗ୍ରା । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅଗ୍ନିମାନ୍ଦ୍ୟ | ଅପାମାର୍ଗ ପତ୍ରର ଚୂର୍ଣ୍ଣ ୩ ଗ୍ରାମ୍ ଓ ଶୁଣ୍ଠିଗୁଣ୍ଡ ୨ ଗ୍ରାମ୍ ଖାଇବା ପୂର୍ବରୁ ଏକତ୍ର ମିଶାଇ ଉଷୁମ ପାଣି ସହ ସେବନ କରିବ । |

Digitized by srujanika@gmail.com

| | |
|---|---|
| ୨. ଶ୍ବାସ | ଏହାର ମୂଳ (୧୦ ଗ୍ରାମ୍) କୁ ସିଝାଇ ଦିନକୁ ୨-୩ ଥର ପିଇବାକୁ ଦେଲେ କଫ ବାହାରି ଯାଇ ଶ୍ବାସ ରୋଗରେ ଆରାମ ମିଳିଥାଏ । |
| ୩. ଅର୍ଶ ଓ ନାଡ଼ି ବ୍ରଣ | ଏହାର ମୂଳ ଚୂର୍ଣ୍ଣ ୩ ଗ୍ରାମ୍ ଚାଉଳଧୂଆ ପାଣି ସହିତ ପିଇବ ଏବଂ ଏହାର ମଞ୍ଜିକୁ ବାଟି ସ୍ଥାନିକ ଲେପ କରିବ । |
| ୪. ପରିସ୍ରା ଜଳାପୋଡ଼ା | ଏହାର ମୂଳ କିମ୍ବା ପତ୍ର ୧୦ ଗ୍ରାମ୍ ନେଇ କଞ୍ଚା ଗାଈ କ୍ଷୀରରେ ବାଟି ଦିନକୁ ୨-୩ ଥର ପିଇବାକୁ ଦେବ । |
| ୫. ସ୍ବପ୍ନଦୋଷ | ଅପାମାର୍ଗ ମୂଳ ଚୂର୍ଣ୍ଣ ଓ ମିଶ୍ରି ସମପରିମାଣ ଏକତ୍ର ମିଶାଇ ସେଥିରୁ ୧ ଚାମଚ ସକାଳ ଓ ସନ୍ଧ୍ୟାରେ ସେବନ କରିବ । |
| ୬. କାମଳା | ମୂଳ ଚୂର୍ଣ୍ଣ ୧୦ ଗ୍ରାମ୍ ନେଇ ଘୋଳଦହି ସହିତ ସେବନ କରିବ । ଏହିପରି ୧୫ ଦିନ ସେବନ କରିବ । |
| ୭. ଜ୍ବର ପ୍ରାରମ୍ଭାବସ୍ଥା | ଅପାମାର୍ଗ ପତ୍ରକୁ (୫/୬ଟି) ବାଟି ସେଥିରେ ଗୁଡ଼ ମିଶାଇ (୧ ଚାମଚ) ବଟିକା ତିଆରି କରି ଜ୍ବର ଆସିବା ପୂର୍ବରୁ ଦେଲେ ଜ୍ବର କମିଯାଏ । |
| ୮. ଫୁଲିଯାଇଥିଲେ | ଅପାମାର୍ଗ କ୍ବାଥ ବା ପାଚନ ଦିନକୁ ୧ କପ ଲେଖାଏଁ ୨ ଥର କରି ୭ ଦିନ ପର୍ଯ୍ୟନ୍ତ ସେବନ କରିବ । |
| ୯. ନାସାର୍ଶ | ଅପାମାର୍ଗ ପତ୍ର ରସ ୨-୩ ଟୋପା ପ୍ରତିଦିନ ୨ ଥର ନାକରେ ପକାଇଲେ ନାକ ଭିତରେ ହୋଇଥିବା ମାଂସବୃଦ୍ଧି ବା ନାସାର୍ଶ ଭଲ ହୁଏ । |
| ୧୦. ମୁଣ୍ଡବିନ୍ଧା | ଅପାମାର୍ଗ ମୂଳକୁ ବାଟି ମସ୍ତକରେ ଲେପଦେବ । |

Digitized by srujanika@gmail.com

୧୧.କଙ୍କଡ଼ା ବିଛା କାମୁଡ଼ିଲେ : ଏହାର ମୂଳକୁ (୫ଗ୍ରାମ୍) ବାଟି ପାଣିରେ ମିଶାଇ ୨-୩ ଥର ପିଇବ ଏବଂ ବାହ୍ୟ ଲେପନ କରିବ ।

ପ୍ରମୁଖ ଔଷଧ : ଅପାମାର୍ଗ ତୈଳ, ଅପାମାର୍ଗ କ୍ଷାର



Digitized by srujanika@gmail.com

# ଅମୃତଭଣ୍ଡା

## CARICA PAPAYA (CARICACEAE)

ସଂସ୍କୃତ ନାମ : ଏରଣ୍ଡ କର୍କଟୀ ; ହିନ୍ଦୀ: ପପେୟା, ପପିତା ;

ଇଂରାଜୀ : Papaya

| | |
|---|---|
| ଉତ୍ପତ୍ତିସ୍ଥଳ | ୱେଷ୍ଟ ଇଣ୍ଡିଜ୍ ଓ ବ୍ରାଜିଲ୍‌ରୁ ଭାରତକୁ ଆସି ବର୍ତ୍ତମାନ ସର୍ବତ୍ର ଚାଷ କରାଯାଉଅଛି |
| ବନସ୍ପତି ବର୍ଣ୍ଣନା | ଏହା ଏକ ଶାଖା ବିହୀନ ମଧ୍ୟମାକାର ବୃକ୍ଷ । ପତ୍ର: ଛତ୍ରାକାର, ଫୁଲ: ଧଳା ରଙ୍ଗ ଓ ଗୁଚ୍ଛାକାରରେ ତଳକୁ ଓହଳି ରହିଥାଏ । ଫଳ: ଗୁଚ୍ଛାକାରରେ ଏକାଧିକ ଆସିଥାଏ ଓ ଏହା ଭିତରେ ଅନେକ ମଞ୍ଜି ଥାଏ । ଏହି ବୃକ୍ଷର ପ୍ରତ୍ୟେକ ସ୍ଥାନରୁ ଆଘାତ ଦ୍ୱାରା କ୍ଷୀର ବାହରେ । |
| ପ୍ରଧାନ ଗୁଣ କର୍ମ | ଦୀପନ,ପାଚନ, କୃମିଘ୍ନ, ପୁଷ୍ଟିକର, ସ୍ତନ୍ୟଜନକ, ମୂତ୍ରଳ ଓ ସ୍ୱେଦଜନକ , |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ଫଳ, ମଞ୍ଜି ଓ କ୍ଷୀର |
| ମାତ୍ରା | ପତ୍ର ଫାଣ୍ଟ: ୪୦-୮୦ ମି.ଲି.<br>ମଞ୍ଜିଚୂର୍ଣ୍ଣ : ୫୦୦ ମି.ଗ୍ରା ରୁ ୧ ଗ୍ରାମ୍ ।<br>କ୍ଷୀର- ୩-୬ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅର୍ଶ | ପ୍ରତିଦିନ ସକାଳେ ଖାଲି ପେଟରେ ପାଚିଲା ଅମୃତଭଣ୍ଡା ସେବନ କରିବ । |
| ୨. ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ | ସକାଳେ ଅମୃତଭଣ୍ଡା ସିଝା ସାମାନ୍ୟ ସୈନ୍ଧବଲୁଣ ପକାଇ ସେବନ କରିବ । |
| ୩. କୃମି | କଞ୍ଚା ଅମୃତଭଣ୍ଡା କ୍ଷୀର ୧ ଚାମଚ, ମହୁ ୧ ଚାମଚ ଏବଂ ପାଣି ଏକତ୍ର ପିଇବ । |

Digitized by srujanika@gmail.com

| | |
|---|---|
| ୪. କାମଳା | ନିୟମିତ ଖାଦ୍ୟରେ ଅମୃତଭଣ୍ଡା ପଥ୍ୟ ରୂପେ ସେବନ କରିବ । |
| ୫. ଅଙ୍ଗ ଶିଥିଳତା | ଏହାର ମଞ୍ଜି ବାଟି ସୋରିଷ ତେଲ ସହ ମିଶାଇ ସ୍ଥାନିକ ମାଲିସ କରିବ । |
| ୬. ଯକୃତ ବୃଦ୍ଧି | ବାଳକମାନଙ୍କୁ କଞ୍ଚା କିମ୍ବା ପାଚିଲା ଅମୃତଭଣ୍ଡା ରସରେ ସାମାନ୍ୟ ଚିନି ମିଶାଇ ୨ ଚାମଚ ୨- ୩ ଥର ଦିନରେ ସେବନ କରିବାକୁ ଦେବ । |
| ୭. ମୁଖ ବ୍ରଣ | ଏହାର ଫଳକୁ ବାଟି ସ୍ଥାନିକ ଲେପ କରିବ । |
| ୮. ଚକ୍ଷୁରୋଗ ଓ ଅନ୍ଧାରକଣା | ଏଥିରେ ଜୀବସାର 'କ' ଅଧିକ ପରିମାଣରେ ଥିବାରୁ ଏହାର ଫଳ ନିୟମିତ ପଥ୍ୟ ରୂପେ ସେବନ କରିବ । |
| ୯. ସ୍ତ୍ରୀମାନଙ୍କର ଅନିୟମିତ ରକ୍ତସ୍ରାବ | ପ୍ରତିଦିନ ୨୫୦ ଗ୍ରାମ୍ ଅମୃତଭଣ୍ଡା ସିଝାଇ ସେବନ କରିବେ । |
| ୧୦. ପ୍ରସୂତା ସ୍ତ୍ରୀ'ର କ୍ଷୀର ନହେଲେ | ପାଚିଲା ଅମୃତଭଣ୍ଡା ପ୍ରତକିଦିନ ପଥ୍ୟ ରୂପେ ସେବନ କରିବ । |



Digitized by srujanika@gmail.com

# ଅରଖ

## CALOTROPIS PROCERA (ASCLEPIADACEAE)

ସଂସ୍କୃତ ନାମ: ଅର୍କ, ଅଳର୍କ ଓ ମଦାର ; ହିନ୍ଦୀ: ମଦାର ; ଇଂରାଜୀ : Madar

| | |
|---|---|
| ଉପ୍ତିସ୍ଥଳ | ଓଡ଼ିଶାର ବାଡ଼ି, ବଗିଚା, ପଡ଼ିଆ ଓ ରାସ୍ତାକଡ଼ରେ ବୁଦା ଆକାରରେ ହୋଇଥାଏ । |
| ବନସ୍ପତି ବର୍ଣ୍ଣନା | ଉଚ୍ଚତା ପ୍ରାୟ ୧.୮-୨.୪ ମିଟର, କାଣ୍ଡ: ସାମାନ୍ୟ ଶକ୍ତ, ଧୂସର ବର୍ଣ୍ଣଯୁକ୍ତ ଓ ତନ୍ତୁଯୁକ୍ତ । ପତ୍ର : ୨.୫''-୬'' ଲମ୍ବା ଓ ୧.୫''-୩.୫'' ଚଉଡ଼ା, ସାମାନ୍ୟ ସ୍ଥୂଳାକାର, ଏହାର ଉପର ଭାଗ ଚିକ୍କଣ ଓ ନିମ୍ନଭାଗ ଲୋମଶ, ପତ୍ର ବୃନ୍ତ: ଛୋଟ, ପୁଷ୍ପଦଣ୍ଡ ପତ୍ରକୋଣରୁ ବାହାରିଥାଏ । ଫୁଲ: ଗୁଚ୍ଛାକାର ଓ ଛତ୍ରାକାର, ସାମାନ୍ୟ ସୁଗନ୍ଧଯୁକ୍ତ, ଶ୍ୱେତାଭ ଓ ବାଇଗଣି ରଙ୍ଗଯୁକ୍ତ,ଉପରେ ଆବରଣ ଥାଏ ।ପୁଷ୍ପ ଭିତର ପାଞ୍ଚ କୋଣୀୟ, ବସନ୍ତ ଋତୁରେ ଫୁଲ ହୋଇଥାଏ । ଫୁଲ ଝଡ଼ିଗଲେ ଫଳ ହୁଏ । ଫଳ ଭିତରେ କଳାମଞ୍ଜି ଥାଏ । ଏହି ବନସ୍ପତିର ସମସ୍ତ ଭାଗରୁ ଆଘାତଦ୍ୱାରା କ୍ଷୀର ବାହାରେ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ, କଫ ନାଶକ, ରକ୍ତ ଦୋଷନାଶକ, ଯକୃତ ଓ ପ୍ଲୀହା ବୃଦ୍ଧିରେ ଏହା ବ୍ୟବହୃତ ହୋଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ପତ୍ର, ଫୁଲ ଓ କ୍ଷୀର । |
| ମାତ୍ରା | ମୂଳ ଛାଲି ଚୂର୍ଣ୍ଣ :୧/୨-୧ ଗ୍ରାମ୍<br>କ୍ଷୀର: ୧/୪ - ୩/୪ ମି.ଲି. |

Digitized by srujanika@gmail.com

## ଔଷଧୀୟ ବ୍ୟବହାର

| | | |
|---|---|---|
| ୧. | ବିଛା କାମୁଡ଼ା | ଅରଖ ମୂଳ (ଅଧଗ୍ରାମ୍) ଦହି ସହିତ ବାଟି ଦଂଶନ ସ୍ଥାନରେ ଲେପ କରିବ । |
| ୨. | ଅଣ୍ଡକୋଷ ବୃଦ୍ଧି ଓ ଶ୍ଳୀପଦରେ | ଅରଖମୂଳ ଛାଲିକୁ କାଞ୍ଜି କିମ୍ବା ଆମ୍ବିଳ ତୋରାଣି ସହିତ ବାଟି ସ୍ଥାନିକ ଲେପ କରିବ । |
| ୩. | ଯାଦୁ | ଏହାର ମୂଳକୁ ଦହିରେ ବାଟି ସ୍ଥାନିକ ଲେପ କରିବ । |
| ୪. | ଗୋଇଠି ଯନ୍ତ୍ରଣାରେ | ପ୍ରାୟ ୧୫ ଟି ଅରଖ ଫୁଲ ନେଇ ରାତିରେ ୫୦ ମି.ଲି. ପାଣିରେ ଫୁଟାଇବ ଏବଂ ଏହାର ବାଷ୍ପରେ ସେକ ଦେବ ଏବଂ ଅରଖ ଫୁଲକୁ ଗରମ କରି ଗୋଇଠିରେ ବାନ୍ଧି ଦେବ । ଏହିପରି ୧ ସପ୍ତାହ କରିବ । |
| ୫. | ମୁହଁରେ କଳା ଚିହ୍ନ ବା ଦାଗ ଦେଉଥିଲେ : | ହଳଦୀଗୁଣ୍ଡକୁ ଅରଖକ୍ଷୀର ସହିତ ମିଶାଇ ଲେପ କରିବ । |
| | ପ୍ରମୁଖ ଔଷଧି | ଅର୍କଲବଣ, ଅର୍କତୈଳ । |



Digitized by srujanika@gmail.com

# ଅଶୋକ

## SARACA ASOCA (CAESALPINIACEAE)

ସଂସ୍କୃତ ନାମ : ଅଶୋକ, ହେମ ପୁଷ୍ପ ; ହିନ୍ଦୀ : ଅଶୋକ ;

ଉପ୍ତତିସ୍ଥଳ — ଓଡ଼ିଶାର ବଣ ଜଙ୍ଗଲରେ ଦେଖିବାକୁ ମିଳେ ଏବଂ ବଗିଚାର ଶୋଭା ବଢ଼ାଇବା ପାଇଁ ଅଶୋକ ବୃକ୍ଷକୁ ରୋପଣ କରାଯାଇଥାଏ ।

ବନସ୍ପତି ବର୍ଣ୍ଣନା — ଏହା ମଧ୍ୟମାକାର ବୃକ୍ଷ, ବହୁତ ଶାଖାପ୍ରଶାଖା ବିଶିଷ୍ଟ, ସର୍ବଦା ସବୁଜ ଘଞ୍ଚ ପତ୍ରରେ ଆଚ୍ଛାଦିତ ଥାଏ । ପତ୍ର: ଆମ୍ବପତ୍ରପରି, କୋମଳ,ତମ୍ବାପରି ରଙ୍ଗ । ଫୁଲ: ଗୁଚ୍ଛାକାର, ସୁଗନ୍ଧିତ, ରକ୍ତବର୍ଣ୍ଣପରି ଲାଲ୍ । ଫଳ: ୪-୧୦ ଇଞ୍ଚ ଲମ୍ବା, ୧-୨ ଇଞ୍ଚ ଚଉଡ଼ା, ଚେପ୍ଟା, ଶିମ୍ବପରି, ପ୍ରତି ଫଳରେ ୪ ରୁ ୮ଟି ମଞ୍ଜି ରହିଥାଏ ଓ ସାମାନ୍ୟ ଚେପ୍ଟା । ଛାଲି: ଚିକ୍କଣ, ବାହାର ଭାଗ ଧୂସରରଙ୍ଗ ଓ ଭିତରଭାଗ ସାମାନ୍ୟ ଲାଲ୍ ।

ପ୍ରଧାନ ଗୁଣ କର୍ମ : ଶୀତ, ବେଦନାସ୍ଥାପକ ଓ ରକ୍ତ ସଂଗ୍ରାହକ । ଏହା ଗର୍ଭାଶୟ ଶିଥିଳତା ଦୂର କରେ । ଏହାର ପ୍ରୟୋଗ ରକ୍ତପ୍ରଦର, କଷ୍ଟାର୍ତ୍ତବ, ଶ୍ୱେତପ୍ରଦର, ଦାହ ଓ ରକ୍ତଗତ ରୋଗରେ ହୋଇଥାଏ ।

ଔଷଧୀୟ ଉପଯୋଗୀ ଅଂଶ — ଛାଲି, ମଞ୍ଜି ଓ ଫୁଲ

ମାତ୍ରା — ଛାଲିକ୍ୱାଥ : ୫୦ ମି.ଲି. । ମଞ୍ଜିଚୂର୍ଣ୍ଣ: ୩-୬ ଗ୍ରାମ୍,

ଫୁଲ ଚୂର୍ଣ୍ଣ: ୩-୬ ଗ୍ରାମ୍ ।

## ଔଷଧୀୟ ବ୍ୟବହାର

୧. ରକ୍ତପ୍ରଦର — ଅଶୋକ ଛାଲିକୁ ଶୁଖାଇ ଗୁଣ୍ଡ କରି ୧୦

Digitized by srujanika@gmail.com

| | | |
|---|---|---|
| | | ଗ୍ରାମ୍ ନେଇ ସେଥିରେ ୮୦ ଗ୍ରାମ୍ କ୍ଷୀର ଏବଂ ଏହାର ୮ ଗୁଣ ପାଣି ନେଇ ସିଝାଇ ଅବଶିଷ୍ଟ ୮୦ ଗ୍ରାମ୍ କ୍ଷୀରକୁ ଛାଣି ଦିନକୁ ଦୁଇଥର କରି ସେବନ କରିବ । ଏହିପରି ୩ ମାସ ସେବନ କରିବ । |
| ୨. ପରିସ୍ରା ନହେଲେ ଓ ପଥୁରୀ (ଅଶ୍ମରୀରେ) | : | ଅଶୋକମଞ୍ଜି ଚୂର୍ଣ୍ଣ ୩-୬ଗ୍ରାମ୍ ଥଣ୍ଡାପାଣିରେ ବାଟି ପିଇବ । |
| ୩. ରକ୍ତାର୍ଶ | | ଅଶୋକ ଛାଲି ୫ ଗ୍ରାମ୍ ଓ ଫୁଲ ୫ ଗ୍ରାମ୍‌କୁ ରାତ୍ରିରେ ୧ ଗ୍ଲାସ୍ ପାଣିରେ ବତୁରାଇ ସକାଳେ ପିଇବ । |
| ୪. ନାଲିରକ୍ତଝାଡ଼ା | | ଏହାର ଫୁଲ ୫ ଗ୍ରାମ୍ ନେଇ ପାଣିରେ ମିଶାଇ ଦିନକୁ ୩ ଥର ପିଇବାକୁ ଦେବ । |
| ୫. ଅସ୍ଥିଭଗ୍ନ | | ଅଶୋକ ଛାଲି ଚୂର୍ଣ୍ଣ ୫ ଗ୍ରାମ୍ ସକାଳ ଓ ସନ୍ଧ୍ୟାରେ କ୍ଷୀର ସହ ପିଇବ । ଏହାଦ୍ୱାରା ଅସ୍ଥି ଶୀଘ୍ର ଯୋଡ଼ି ହୋଇଯାଏ ଓ ବେଦନା କମିଯାଇଥାଏ । |
| ପ୍ରମୁଖ ଔଷଧ | | ଅଶୋକାରିଷ୍ଟ, ଅଶୋକଘୃତ । |



Digitized by srujanika@gmail.com

# ଅଶ୍ୱଗନ୍ଧା

## WITHANIA SOMNIFERA (SOLANACEAE)

ସଂସ୍କୃତ ନାମ : ଅଶ୍ୱଗନ୍ଧା, ବାଜୀଗନ୍ଧା ; ହିନ୍ଦୀ : ଅସଗନ୍ଧ ;

ଇଂରାଜୀ: Winter Cherry

| | |
|---|---|
| ଉତ୍ପତ୍ତି ସ୍ଥଳ. | ଶୁଷ୍କ ଅଞ୍ଚଳରେ ବ୍ୟବସାୟିକ ଭିତ୍ତିରେ ଚାଷ କରାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ କ୍ଷୁଦ୍ର ବନସ୍ପତି । ଉଚ୍ଚତା-୧.୫ ମିଟର, ପତ୍ର: ଲୋମଶ, ଫୁଲ: ଗୁଚ୍ଛାକାର ହୋଇଥାଏ, ଏହା ଛୋଟ, ସବୁଜ ଓ ହଳଦିଆ ରଙ୍ଗ । ମୂଳ: ୨.୫ ରୁ ୩.୫ ସେ.ମି ଲମ୍ବା, ଆଙ୍ଗୁଠିପରି ମୋଟା, ଟାଣ, ଚିକ୍କଣ, ଉପରଭାଗ ଧୂସରବର୍ଣ୍ଣ ଓ ଭିତରଭାଗ ଧଳା । ଏହାର ମୂଳ ସଦ୍ୟ ଅବସ୍ଥାରେ ଅଶ୍ୱ ମୂତ୍ର ପରି ଗନ୍ଧ ହୋଇଥିବାରୁ ଏହାର ନାମକରଣ ଏହିପରି ହୋଇଅଛି । ଫଳ: ଗୋଲ ଓ ପାଚିଲେ ଲାଲ୍ ହୁଏ । |
| ପ୍ରଧାନ ଗୁଣ କର୍ମ | ଶୁକ୍ରବର୍ଦ୍ଧକ, ବାଜୀକର, ରସାୟନ ଏବଂ ଏହା ବାତରୋଗ, ଉନ୍ମାଦ ଓ ଦୁର୍ବଳତାରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ |
| ମାତ୍ରା | ଚୂର୍ଣ୍ଣ: ୩ -୬ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | | |
|---|---|---|
| ୧. | କୃଶତା ଏବଂ ଦୁର୍ବଳତା : | ଅଶ୍ୱଗନ୍ଧା ମୂଳଚୂର୍ଣ୍ଣ ୫ ଗାମ୍ ୧ କପ୍ କ୍ଷୀର ସହିତ ଦିନକୁ ୨ ଥର କରି ସେବନ କରିବ । |
| ୨. | ଶୁକ୍ରତାରଲ୍ୟ ଏବଂ ଶୁକ୍ରକ୍ଷୟରେ : | ଅଶ୍ୱଗନ୍ଧା ମୂଳଚୂର୍ଣ୍ଣ ୫ ଗ୍ରାମ୍, ମହୁ ୫ ଗ୍ରାମ୍, ମିଶ୍ରି ୫ ଗ୍ରାମ୍ ଏବଂ ଗାଈଘିଅ ୧୦ ଗ୍ରାମ୍କୁ |

Digitized by srujanika@gmail.com

ଏକତ୍ର ମିଶାଇ ଦିନକୁ ୨ ଥର କରି ଶୀତ ଋତୁରେ ସେବନ କରିବ ।

୩. ଅନିଦ୍ରା : ଏହାର ମୂଳଚୂର୍ଣ୍ଣ ୫ ଗ୍ରାମ୍ ଗାଈଘିଅ ୧ ଚାମଚ, ଚିନି ଅଧା ଚାମଚ ସହିତ ମିଶାଇ ଦିନକୁ ୨ଥର ସେବନ କରିବ ।

୪. ବାତିକ ଶ୍ୱାସ ଏହାର ମୂଳ କ୍ଷାର (ଅର୍ନ୍ତଧୁମ) ୫୦୦ ମି.ଗ୍ରା ଘିଅ ଅଧା ଚାମଚ ଓ ମହୁ ୧ ଚାମଚ ସହ ସେବନ କରିବ ।

୫. ଆମବାତ : ଏହାର ସ୍ୱରସ ୨୫ ମି.ଲି ଦିନକୁ ୨ ଥରକରି ମହୁ ସହିତ ମିଶାଇ ସେବନ କରିବ ।

୬. କ୍ଷୟରୋଗ : ଅଶ୍ୱଗନ୍ଧା ଓ ପିପ୍ପଳୀ ଚୂର୍ଣ୍ଣ ପ୍ରତ୍ୟେକ ୫ ଗ୍ରାମ୍ ନେଇ ସେଥିରେ ମହୁ ୧ ଚାମଚ, ଘିଅ ଅଧା ଚାମଚ ଓ ମିଶ୍ରି ୨ ଗ୍ରାମ୍ ଏକତ୍ର ମିଶାଇ ନିୟମିତ ୩ ମାସ ସେବନ କରିବ ।

୭. ପ୍ରମେହ ଅଶ୍ୱଗନ୍ଧାଚୂର୍ଣ୍ଣ ୫ ଗ୍ରାମ୍, ଅଁଳା ସ୍ୱରସ ୫ ମି.ଲି ସହିତ ପ୍ରତିଦିନ ୨ଥର ସେବନ କରିବ ।

୮. ବନ୍ଧ୍ୟା ସ୍ତ୍ରୀ ଅଶ୍ୱଗନ୍ଧାଚୂର୍ଣ୍ଣ ୫ ଗ୍ରାମକୁ ଗାଈଘିଅ ୩ ଗ୍ରାମ୍ ସହିତ ମିଶାଇ ମାସିକ ଧର୍ମର ସ୍ନାନ ପରେ ୪ର୍ଥ ଦିନ ନିୟମିତ ସେବନ କରିବ ଓ ଗାଈକ୍ଷୀର ୩ ମାସ ସେବନ କରିବ ।

୯. ପ୍ରଦର ଅଶ୍ୱଗନ୍ଧାଚୂର୍ଣ୍ଣ ୩ ଗ୍ରାମ୍ ଓ ମିଶ୍ରୀ ୧୨ ଗ୍ରାମକୁ ଗାଈକ୍ଷୀର ସହିତ ସେବନ କରିବ ।

୧୦. ହୃଦ୍‌ରୋଗ : ଏହାର ମୂଳଚୂର୍ଣ୍ଣ ୩ ଗ୍ରାମକୁ ପ୍ରତିଦିନ ଉଷୁମ ପାଣି ସହିତ ସେବନ କରିବ ।

ପ୍ରମୁଖ ଔଷଧି ଅଶ୍ୱଗନ୍ଧା ରସାୟନ, ଅଶ୍ୱଗନ୍ଧାରିଷ୍ଟ, ଅଶ୍ୱଗନ୍ଧାଘୃତ ।



Digitized by srujanika@gmail.com

# ଅଶ୍ୱତ୍ଥ

## FICUS RELIGIOSA (MORACEAE)

ସଂସ୍କୃତ ନାମ: ପିପ୍ପଳ, ବୋଧିଦ୍ରୁ; ହିନ୍ଦୀ: ପୀପଲ;

ଇଂରାଜୀ : Sacred Fig.

| | |
|---|---|
| ଉପ୍ତିସ୍ଥଳ | ଏହା ଓଡ଼ିଶାର ଅତି ସୁପରିଚିତ ବୃକ୍ଷ ଓ ସର୍ବତ୍ର ଉପଲବ୍ଧ । |
| ବନସ୍ପତି ବର୍ଣ୍ଣନା | ଏହି ବୃକ୍ଷ ବହୁତ ଉଚ୍ଚତା ବିଶିଷ୍ଟ । ୭୦-୮୦ ଫୁଟ ପର୍ଯ୍ୟନ୍ତ ଉଚ୍ଚ । ବିଶାଳକାୟ, ବହୁତ ଶାଖାପ୍ରଶାଖାଯୁକ୍ତ ଓ କଟିଗଲେ କ୍ଷୀର ବାହାରେ । ପତ୍ର : ଗୋଲାକାର ଓ ଅଗ୍ରଭାଗ ମୁନିଆଁ । ଫଳ : ଗୋଲ୍ ଓ ବହୁତ ଆସିଥାଏ । ପକ୍ୱାବସ୍ଥାରେ ବାଇଗଣି ଦେଖାଯାଏ । ଗ୍ରୀଷ୍ମରେ ଫଳ ଆସେ ଓ ବର୍ଷାଋତୁରେ ଫଳ ପାଚେ । |
| ପ୍ରଧାନ ଗୁଣ କର୍ମ | ଶୀତ, ମୂତ୍ରସଂଗ୍ରହଣୀୟ ଓ ବ୍ରଣନାଶକ । ଏହା ବାତରୋଗ, ପ୍ରମେହ, ରକ୍ତପିତ୍ତ ଓ ଅତିସାର ଆଦିରେ ପ୍ରୟୋଗ କରାଯାଏ । |
| ଔଷଧୀୟ ଉପଯୋଗୀ ଅଂଶ | ଛାଲି, ପତ୍ର ଓ କ୍ଷୀର |
| ମାତ୍ରା | କ୍ୱାଥ : ୫୦-୧୦୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅତିସାର | କୋମଳ ପତ୍ର ୩ ଟିକୁ ବାଟି ଦିନକୁ ୩ ଥର ପିଇବ । |
| ୨. ଶ୍ୱାସ | ଏହାର ଫଳ ଚୂର୍ଣ୍ଣ ୫ ଗ୍ରାମ୍କୁ ଉଷୁମ ପାଣି ସହିତ ଦିନକୁ ୨ ଥର କରି ୧୫ ଦିନ ସେବନ କରିବ । |

Digitized by srujanika@gmail.com

| | | |
|---|---|---|
| ୩. ଉଦରଶୂଳ | | ୨-୩ କୋମଳ ପତ୍ରକୁ ବାଟି ସାମାନ୍ୟ ଗୁଡ଼ ମିଶାଇ ସେବନ କରିବ । |
| ୪. କୁକୁର କାଶ (ହୁପିଂକଫ) | : | ଅଶ୍ୱତ୍ଥର ଭିତରପାଖ ଛାଲି ୧୦ ଗ୍ରାମ୍‌କୁ ନେଇ କ୍ୱାଥ ପ୍ରସ୍ତୁତ କରି ୧ ଚାମଚ ମହୁ ମିଶାଇ ଦିନକୁ ୨-୩ ଥର ଖାଇବାକୁ ଦେବ । |
| ୫. ବିସର୍ପ | | ଛାଲିଚୂର୍ଣ୍ଣ ୫ ଗ୍ରାମ୍ ନେଇ ଚା’ ପରି ଫାଣ୍ଟ ପ୍ରସ୍ତୁତ କରି ନିୟମିତ ୨ ଥର ପିଇବ । |
| ୬. ଗ୍ରହଣୀ | | ଅଶ୍ୱତ୍ଥର ଭିତର ପାଖ ଛାଲି ଚୂର୍ଣ୍ଣ ୫ ଗ୍ରାମ୍‌କୁ ମିଶ୍ରି ଅଧା ଚାମଚ ସହ ମିଶାଇ ଦିନକୁ ୨ ଥର କରି ସେବନ କରିବ । |
| ୭. ଅଫିମର କୁପ୍ରଭାବ ଉପଶମ ପାଇଁ | : | ଭିତର ଛାଲି କ୍ୱାଥ (ଏକ କପ୍) ଦିନକୁ ୩ ଥର ପିଇବାକୁ ଦେବ । |
| ୮. ବ୍ରଣ ଓ ପୋଡ଼ା ଘା’ | | ଅଶ୍ୱତଥ୍ ଗଛ ଛାଲି କ୍ୱାଥରେ ବ୍ରଣ ପ୍ରକ୍ଷାଳନ କରିବ ଏବଂ ଛାଲି ଚୂର୍ଣ୍ଣ ପକ୍ୱ ବ୍ରଣ ଉପରେ ସିଞ୍ଚନ କରିବ । |
| ୯. ଶ୍ୱିତ୍ର (ଧଳାଛଉ) | | ଏହାର ଛାଲିକୁ ବାଟି ସ୍ଥାନିକ ଲେପ କରିବ । |
| ୧୦. ବ୍ରଣଶୋଥ | | କୋମଳପତ୍ରରେ ଘିଅ ଲଗାଇ ଗରମ କରି ଶୋଥ ସ୍ଥାନରେ ସେକ ଦେବ । |



Digitized by srujanika@gmail.com

# ଅଁଳା

## EMBLICA OFFICINALIS (EUPHORBIACEAE)

ସଂସ୍କୃତ ନାମ: ଆମଳକୀ, ଧାତ୍ରୀ ଓ ବୟସ୍ୟା; ହିନ୍ଦୀ: ଆମ୍ଲା;

ଇଂରାଜୀ : Emblic Myrobalan

ଉପ୍ତିସ୍ଥଳ ଓଡ଼ିଶାର ବଣ ଜଙ୍ଗଲରେ ଅଁଳା ଗଛ ବହୁଳ ଭାବେ ଦେଖାଯାଏ । ଓଡ଼ିଶାର ଗାଁ ଗହଳି, ଦେବାଳୟମାନଙ୍କରେ ଏହି ଗଛ ଲୋକମାନେ ଲଗାଇଥାନ୍ତି ।

ବନସ୍ପତି ବର୍ଣ୍ଣନା : ଏହି ଗଛର ଉଚ୍ଚତା ୬ ରୁ ୭ ମିଟର । ପତ୍ର : ତେନ୍ତୁଳି ପରି, ଡ଼େମ୍ଫର ଦୁଇ ପାଖରେ ସରୁ ସରୁ ପତ୍ର ହୋଇଥାଏ । ଫଳ: ଗୋଲ, ଛଅ ରେଖାଯୁକ୍ତ, ଗୁଚ୍ଛାକାର ଏବଂ ଧାଡ଼ି ହୋଇ ପତ୍ର ଉପରେ ରହିଥାଏ ।

ପ୍ରଧାନ ଗୁଣ କର୍ମ : ଏହା ଅମ୍ଳ (ଏସିଡ଼ିଟି), ହୃଦ୍‌ରୋଗ, ଜ୍ୱର,ଅରୁଚି, ଅଜୀର୍ଣ୍ଣ, ଆଖିରୋଗ ଏବଂ ଦୁର୍ବଳତା ଦୂର କରେ ।

ଔଷଧୀୟ ଉପଯୋଗୀ ଅଂଶ ଫଳ (ପାକଳ ଫଳ)

ମାତ୍ରା ସ୍ୱରସ ୧୦-୨୦ ମି.ଲି., ଚୂର୍ଣ୍ଣ : ୩-୬ ଗ୍ରାମ୍

## ଔଷଧୀୟ ବ୍ୟବହାର

୧. ରୋଗ ପ୍ରତିରୋଧକଶକ୍ତି ଏବଂ ସ୍ମୃତି ଶକ୍ତି ପାଇଁ : ଶୁଖିଲା ଅଁଳା ଚୂର୍ଣ୍ଣକୁ କଞ୍ଚା ଅଁଳା ରସରେ ୨୧ ଦିନ ବାଟିବା ପରେ ଶୁଖାଇ ପ୍ରତିଦିନ ୩ ଗ୍ରାମ୍ ନେଇ ଅଧା ଚାମଚ ଘିଅ ଓ ମହୁ ୧ ଚାମଚ ସହିତ ୩ ମାସ ସେବନ କରିବ ।

୨. ମଧୁମେହ (କ) ଅଁଳା ରସ ୨ ଚାମଚକୁ ୧/୨ କପ୍ କଲରା ରସ ସହିତ ଦିନକୁ ୨ଥର କରି

Digitized by srujanika@gmail.com

୨ ମାସ ପାନ କଲେ ମଧୁମେହ ରୋଗୀକୁ ଉପଶମ ଲାଗେ ।

(ଖ) ଅଁଳାଗୁଣ୍ଡ ୩ ଗ୍ରାମ୍ ଓ ହଳଦୀଗୁଣ୍ଡ ୩ ଗ୍ରାମ୍ ଏକାଠି ମିଶାଇ ପ୍ରତିଦିନ ସକାଳେ ସେବନ କରିବ ।

୩. ଦୃଷ୍ଟିଶକ୍ତି ବୃଦ୍ଧିପାଇଁ — ଅଁଳା ରସ ୧ ଚାମଚକୁ ୧ ଚାମଚ ମହୁ ସହିତ ମିଶାଇ ଦିନକୁ ୨ ଥର ୩ ମାସ ସେବନ କରିବେ ଏବଂ ଅଁଳା ବତୁରା ପାଣିରେ ଚକ୍ଷୁ ପ୍ରକ୍ଷାଳନ କରିବ ।

୪. ଅସମୟରେ ବାଳ ପାଚିଗଲେ କିମ୍ବା ବାଳ ଝଡ଼ିଗଲେ — ଅଁଳାରସ ୧ ଚାମଚ, ଗାଈ ଘିଅ ୧ ଚାମଚ ସହିତ ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ସେବନ କରିବାକୁ ଦେବ ଏବଂ ଅଁଳା ବତୁରା ପାଣିରେ ମୁଣ୍ଡକୁ ପ୍ରଦିଦିନ ଧୋଇବ ।

୫. ଅମ୍ଳ ରୋଗରେ — ଅଁଳାଗୁଣ୍ଡ ୩ ଗ୍ରାମ୍ ଓ ଅଧାଚାମଚ ମିଶ୍ରି ଗୁଣ୍ଡ ଏକତ୍ର ମିଶାଇ ୫ ଗ୍ରାମ୍ ସକାଳ ଓ ସନ୍ଧ୍ୟାରେ ସେବନ କରି ପରେ କ୍ଷୀରପିଇବ । ଏହିପରି ଦେଢ଼ ମାସ ସେବନ କରିବ ।

୬. ପରିସ୍ରା ଜଳାପୋଡ଼ା — ଅଁଳା ରସ ୧ ଚାମଚ ସହିତ ଦୁବରସ ୧ ଚାମଚ ମିଶାଇ ଦିନକୁ ୨ ଥର କରି ପିଇବ ।

୭. ଶଯ୍ୟାମୂତ୍ର — ଅଁଳା ଓ କଳାଜିରା ସମାନ ଭାଗ ନେଇ ଚୂର୍ଣ୍ଣ କରିବ ଓ ସେଥିରୁ ଅଧାଚାମଚ ଲେଖାଏଁ ମହୁ ସହିତ ପ୍ରତିଦିନ ଶୋଇବା ପୂର୍ବରୁ ସେବନ କରିବ ।

୮. ମୁଣ୍ଡ ବୁଲାଇଲେ ବା ଭ୍ରମ : ଶୁଖିଲା ଅଁଳା ୬ ଗ୍ରାମ୍ ଏବଂ ଧନିଆଁ ୬ ଗ୍ରାମ୍ ନେଇ ଦରକୁଟା କରି ରାତିରେ ମାଟିପାତ୍ରରେ (୧ କପ୍) ପାଣିରେ ବତୁରାଇବ ଏବଂ ପରଦିନ ସକାଳେ ଛାଣି ସେଥିରେ ଅଧା ଚାମଚ ମିଶ୍ରିଗୁଣ୍ଡ ମିଶାଇ ୮-୧୦ ଦିନ ପର୍ଯ୍ୟନ୍ତ ପିଇବାକୁ ଦେବ ।

Digitized by srujanika@gmail.com

୯. ମୁଖ ବ୍ରଣ ଦାଗ — ଅଁଳା ଫଳକୁ ଗୋମୂତ୍ରରେ ୧ ସପ୍ତାହ ପର୍ଯ୍ୟନ୍ତ ଭିଜାଇ (ପ୍ରତିଦିନ ଗୋମୂତ୍ର ବଦଳାଇବ) ତା'ପରେ ଛେଳି କ୍ଷୀରରେ ବାଟି ମଲମ ପ୍ରସ୍ତୁତ କରି ପ୍ରତିଦିନ ମୁହଁରେ ଲେପ ଦେବ ।

ପ୍ରମୁଖ ଔଷଧି : ଚ୍ୟବନପ୍ରାଶ, ଆମଳକୀ ରସାୟନ, ଧାତ୍ରୀ ଲୌହ ।



Digitized by srujanika@gmail.com

# ଅଙ୍କରାନ୍ତି

**SOLANUM XANTHOCARPUM (SOLANACEAE)**

ସଂସ୍କୃତ ନାମ : କଣ୍ଟକାରୀ, ନିଦିଗ୍‌ଧିକା, ବ୍ୟାଘ୍ରୀ; ହିନ୍ଦୀ: ଛୋଟି କଟେରୀ;
ଇଂରାଜୀ: Yellow-berried night shade.

| | |
|---|---|
| ଉପ୍ତିସ୍ଥଳ | ନଦୀପଠା, ପଡ଼ିଆ ଓ ରାସ୍ତାକଡ଼ରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହି କଣ୍ଟାଳିଆ ବନସ୍ପତି ୩୦ ରୁ ୧୨୦ ସେ.ମି ବ୍ୟାସରେ ଜମି ଉପରେ ବିଛାଇ ହୋଇଥାଏ । ପତ୍ର: ୨-୪ ଇଞ୍ଚ ଲମ୍ବା, ୧-୩ ଇଞ୍ଚ ଚଉଡ଼ା, କଣ୍ଟାଯୁକ୍ତ ତଥା ଅସମାନ ଧାରଯୁକ୍ତ । ଫୁଲ: ନୀଳ ଏବଂ କ୍ୱଚିଦ୍ ଧଳାରଙ୍ଗ । ଫଳ: ଗୋଲ୍, ସବୁଜ, ଧାରଯୁକ୍ତ ଓ ଛୋଟ ଛୋଟ ବାଇଗଣ ପରି ଏବଂ ହଳଦିଆ କିମ୍ବା ଧଳା ବର୍ଣ୍ଣ । ମଞ୍ଜି : ଚିକ୍କଣ ଓ ଛୋଟ । |
| ପ୍ରଧାନ ଗୁଣ କର୍ମ | କାଶ, ଶ୍ୱାସ ନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | ପଞ୍ଚାଙ୍ଗ |
| ମାତ୍ରା | କ୍ୱାଥ ୪୦-୮୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅର୍ଶ | ସଂପୂର୍ଣ୍ଣ ଗଛର କ୍ୱାଥ ୪୦-୮୦ ମି.ଲି. ଦିନକୁ ୨ ଥର ପିଇବ । |
| ୨. କାଶ | ଏହି ଗଛର କ୍ୱାଥରେ ଗୁଡ଼ ଓ ଅଁଳା ଚୂର୍ଣ୍ଣ ୩ ଗ୍ରାମ୍ ପକାଇ ସେବନ କରିବ । |
| ୩. ଶ୍ୱାସ | ଏହାର କ୍ୱାଥ (୫୦ ମି.ଲି), ଅଁଳାଗୁଣ୍ଡ (୩ ଗ୍ରାମ୍) ଓ ସାମାନ୍ୟ ହିଙ୍ଗୁ ସହ ଅଧାଚାମଚ ମହୁ ମିଶାଇ ସେବନ କରିବ । |

Digitized by srujanika@gmail.com

| | |
|---|---|
| ୪. ଅଂଶୁଘାତ | ଏହାର କ୍ୱାଥ ୪୦-୮୦ ମି.ଲି. ୨-୩ ଥର ଦିନକୁ ପିଇବାକୁ ଦେବ । |
| ୫. କଫରୋଗ | ଏହାର କ୍ୱାଥ ୪୦ ମି.ଲି.ରେ ପିପ୍ପଳୀଚୂର୍ଣ୍ଣ ଅଧାଚାମଚ ମିଶାଇ ସେବନ କରିବ । |
| ୬. ମୂତ୍ର ଅବରୋଧ | ଏହାର କ୍ୱାଥ ମହୁ ସହିତ ମିଶାଇ ସେବନ କରିବ । |
| ୭. ଅଶ୍ମରୀ | ମୂଳ ଚୂର୍ଣ୍ଣ ୩ ଗ୍ରାମ୍ ଦହି ସହିତ ସେବନ କରିବ । |
| ୮. ଆଙ୍ଗୁଳି ସନ୍ଧିରେ ଘା' ହେଲେ | ସୋରିଷ ତେଲରେ ଏହାର ସ୍ୱରସକୁ ପକାଇ ଗରମ କରି ସ୍ଥାନିକ ଲେପ ଦେବ । |
| ୯. ବାଳକମାନଙ୍କ କାଶ | ଫୁଲର କେଶରକୁ ଶୁଖାଇ ଗୁଣ୍ଡ କରି ୬୦ ମି.ଗ୍ରା ନେଇ ସେଥିରେ ସାମାନ୍ୟ ମହୁ ମିଶାଇ ଦିନକୁ ୩ ଥର ସେବନ କରିବ । |
| ପ୍ରମୁଖ ଔଷଧି | କଣ୍ଟକାରୀ ଘୃତ, ବ୍ୟାଘ୍ରୀତୈଳ, ବ୍ୟାଘ୍ରୀହରିତକୀ । |



Digitized by srujanika@gmail.com

# ଆମ୍ବ

## MANGIFERA INDICA (ANACARDIACEAE)

ସଂସ୍କୃତ ନାମ: ଆମ୍ର ; ହିନ୍ଦୀ: ଆମ୍ ; ଇଂରାଜୀ: Mango Tree

| | |
|---|---|
| ଉପସ୍ଥିତି ସ୍ଥଳ | ରାସ୍ତାକଡ଼, ବଣ ଜଙ୍ଗଲ ଓ ପଡ଼ିଆରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ବୃକ୍ଷର ଉଚ୍ଚତା ୫୦-୬୦ ମିଟର । ପତ୍ର: ୧୦-୩୦ ସେ.ମି ଲମ୍ବା, ୨.୫-୭.୫ ସେ.ମି ଚଉଡ଼ା, ଅଗ୍ରଭାଗ ମୁନିଆଁ, ମକଚି ଦେଲେ ସୁଗନ୍ଧିତ ହୁଏ । ମାଘ-ଫାଲ୍‌ଗୁନରେ ବଉଳ ଓ ଗ୍ରୀଷ୍ମରେ ଆମ୍ବଫଳ ହୁଏ । |
| ପ୍ରଧାନ ଗୁଣ କର୍ମ | ଛାଲି-ରକ୍ତପିତ୍ତ ନାଶକ, ପକ୍ୱ ଫଳ: ବଳକାରକ, ରକ୍ତ ବର୍ଦ୍ଧକ, ପୃଷ୍ଟିକର ଓ ମସ୍ତିଷ୍କ ଦୁର୍ବଳତା ନାଶକ ଅଟେ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ଛାଲି, ଫୁଲ (ବଉଳ), ଫଳ ଓ କୋଇଲି |
| ମାତ୍ରା | ସ୍ୱରସ: ୧୦-୨୦ ମି.ଲି<br>କ୍ୱାଥ ବା ପାଚନ ୫୦-୧୦୦ ମି.ଲି,<br>ଚୂର୍ଣ୍ଣ : ୩-୬ ଗ୍ରାମ୍ । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ମୁଣ୍ଡବ୍ୟଥା | ଆମ୍ବ କୋଇଲି ୧ଟି ଓ ୧ଟି ହରିଡ଼ାକୁ କ୍ଷୀରରେ ବାଟି କପାଳରେ ଲେପ କରିବ । |
| ୨. ନାକରୁ ରକ୍ତ ସ୍ରାବ | ଆମ୍ବ କୋଇଲି ଚୂର୍ଣ୍ଣ ଶୁଙ୍ଘିବ ଅଥବା ଆମ୍ବ କୋଇଲି ସ୍ୱରସ ୨-୪ ଟୋପା ନାକରେ ପକାଇବ । |
| ୩. ଦନ୍ତରୋଗ ବା ମୁଖ ଦୌର୍ଗନ୍ଧ | ଆମ୍ବର ପାଚିଲା ପତ୍ରକୁ ପ୍ରତିଦିନ ୧୦ ମିନିଟ୍ ପର୍ଯ୍ୟନ୍ତ ଚୋବାଇବ । |

Digitized by srujanika@gmail.com

୪. ଅଂଶୁଘାତ — କଞ୍ଚା ଆମ୍ବକୁ ପୋଡ଼ି, ଚିନି ଓ ଲୁଣ ମିଶାଇ ସରବତ କରି ବାରମ୍ବାର ପିଇବ ।

୫. ଅତିସାର — ଆମ୍ବର କୋମଳ ପତ୍ର ୧୦-୧୨ ଟି ନେଇ କ୍ୱାଥ (୧ କପ୍) ପ୍ରସ୍ତୁତ କରି ଦିନକୁ ୨/୩ ଥର ପିଇବାକୁ ଦେବ ।

୬. କୃମି — ଆମ୍ବ କୋଇଲି ଚୂର୍ଣ୍ଣ ୫ ଗ୍ରାମ୍ ଗରମ ପାଣି ସହିତ ପିଇବାକୁ ଦେବ ।

୭. ପ୍ଲୀହା ବୃଦ୍ଧି — ଆମ୍ବ ରସ ୬୦ ଗ୍ରାମ୍‌ରେ ମହୁ ୧୨ ଗ୍ରାମ୍ ମିଶାଇ ପ୍ରତିଦିନ ସକାଳେ ପିଇବାକୁ ଦେବ । ଏହିପରି ୨୧ ଦିନ ସେବନ କରିବ ।

୮. ରକ୍ତହୀନତା — ପାଚିଲା ଆମ୍ବ ଚୂଷି କରି ଖାଇବା ପରେ କ୍ଷୀର ପିଇବ । ଏହିପରି ଦିନକୁ ୨ ଥର କରି ୧ ମାସ ସେବନ କରିବ ।

୯. ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଓ ବାନ୍ତି — ଆମ୍ବ ବଉଳକୁ ଚା' ପରି ଫୁଟାଇ ପିଇବ ।

୧୦. ରକ୍ତପ୍ରଦର — କଞ୍ଚା ଆମ୍ବକୁ ଛୋଟ ଖଣ୍ଡ କରି କାଟି ଘିଅରେ ଭାଜି ପରେ ଚିନି ମିଶାଇ ୧୫ ଦିନ ପର୍ଯ୍ୟନ୍ତ ସେବନ କରିବ ।



Digitized by srujanika@gmail.com

# ଇଷବଗୋଲ

## PLANTAGO OVATA (PLANTAGINACEAE)

ସଂସ୍କୃତ ନାମ: ଅଶ୍ୱଗୋଲ୍, ଇଷବ୍‌ଗୋଲ୍; ହିନ୍ଦୀ : ଇସବ୍‌ଗୋଲ୍ ;

ଇଂରାଜୀ: Spogel seeds

| | |
|---|---|
| ଉପ୍ତିସ୍ଥଳ | ଏହା ଭୂମଧ୍ୟସାଗରୀୟ କ୍ଷେତ୍ର, ପଶ୍ଚିମ ଏସିଆରୁ ଭାରତକୁ ଆସି ବ୍ୟାପାରିକ ଦୃଷ୍ଟିରୁ ଉତ୍ତର ଗୁଜୁରାଟ, ପଟିୟାଲା, ହରିୟାନା, ଉତ୍ତରପ୍ରଦେଶରେ ଏବଂ ପଶ୍ଚିମବଙ୍ଗ ଓ ଓଡ଼ିଶାରେ ପ୍ରଚୁର ମାତ୍ରାରେ ଚାଷ କରାଯାଉଅଛି । |
| ବନସ୍ପତି ବର୍ଣ୍ଣନା | ଏହା ଏକ ଲୋମଶ ଏକ ବର୍ଷୀୟ ବୁଦା ଜାତୀୟ ବନସ୍ପତି । ଆମ ଦେଶରେ ଏହା ଶୀତକାଳ (ଅକ୍ଟୋବର-ଡ଼ିସେମ୍ବର) ରେ ରୋପଣ କରାଯାଏ । ଶାଖା: ପତଳା, ମୂଳରୁ ବାହାରିଥାଏ । ପତ୍ର: ୩-୯ ଇଞ୍ଚ, ଧାନପତ୍ର ପରି ଲମ୍ବା, ୩ ଶିରାଯୁକ୍ତ । ଫୁଲ: ଅଣ୍ଡାକାର, ପୁଷ୍ପଗୁଚ୍ଛ ଅଗ୍ରଭାଗ ଗୋଲ ଏବଂ ଚିକ୍କଣ । ଫଳ: ଅଣ୍ଡାକାର, ୮ ସେ.ମି ଲମ୍ବା, ଗୋଲାଗ୍ର । ମଞ୍ଜି: ଅଳସୀ ମଞ୍ଜିଠାରୁ ମୋଟା, ଗୋଲାକାର । ଏହା ଦେଖିବାକୁ ଘୋଡ଼ା କାନ ପରି ଏବଂ ଏହାର ରଙ୍ଗ ଗୋଲାପ ଫୁଲ ପରି । |
| ପ୍ରଧାନ ଗୁଣ କର୍ମ | ମଧୁର, ସ୍ନିଗ୍ଧ, ବାତପିତ୍ତ ଶାମକ । ଏହା ଅତିସାର, ପ୍ରବାହିକା ଓ ରକ୍ତାର୍ଶ ଆଦିରେ ପ୍ରୟୋଗ ହୋଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମଞ୍ଜି ଏବଂ ମଞ୍ଜିର ପାଖୁଡ଼ା |
| ମାତ୍ରା | ୫-୧୦ ଗ୍ରାମ୍ |

Digitized by srujanika@gmail.com

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅତିସାର ଏବଂ ଗ୍ରହଣୀ : | ଇଷବ୍‌ଗୋଲ୍ ଭୂସୀ (୫ ଗ୍ରାମ୍) କୁ ପାଣିରେ ବତୁରାଇ ପ୍ରତିଦିନ ୨-୩ ଥର ସେବନ କରିବ କିମ୍ବା ଇଷବଗୋଲ ଭୂସୀ ୬ ଗ୍ରାମ୍ ଓ ଚିନି ୬ ଗ୍ରାମ୍ ରାତ୍ରିରେ ପାଣିରେ ମିଶାଇ ରଖି ସକାଳେ କିଛିଦିନ ସେବନ କରିବ । |
| ୨. କୋଷ୍ଠକାଠିନ୍ୟ | ଇଷବଗୋଲ ଭୂସୀ ୫-୬ ଗ୍ରାମ୍ ରାତ୍ରିରେ ଶୋଇବା ବେଳେ ଉଷୁମ ପାଣି କିମ୍ବା ଉଷୁମ କ୍ଷୀର ସହିତ ସେବନ କରିବ । |
| ୩. ସ୍ୱପ୍ନଦୋଷ | ଭୂସୀ ୬ ଗ୍ରାମ୍ ଓ ମିଶ୍ରୀ ୧୨ ଗ୍ରାମ୍ ସେବନ କରି ପ୍ରତିଦିନ ରାତ୍ରିରେ ଗାଈକ୍ଷୀର ପିଇବ । |
| ୪. ଶ୍ୱେତ ପ୍ରଦର | ଇଷବଗୋଲକୁ କ୍ଷୀରପାକ (୧ କପ୍) କରି ସେଥିରେ ସାମାନ୍ୟ ମିଶ୍ରି ମିଶାଇ ଦିନକୁ ୨ ଥର ସେବନ କରିବ । |
| ୫. ପୈତ୍ତିକ ଶିରଶୂଳ | ଇଷବଗୋଲକୁ ପାଣିରେ ଅଥବା ବାଦାମତେଲରେ ମିଶାଇ ସ୍ଥାନିକ ଲେପ କରିବ । |
| ପ୍ରମୁଖ ଯୋଗ | ଭୂସି |



Digitized by srujanika@gmail.com

# କଲରା

MOMORDICA CHARANTIA (CUCURBITACEAE)

ସଂସ୍କୃତ ନାମ: କାରବେଲ୍ଲକ ; ହିନ୍ଦୀ: କରେଲା ; ଇଂରାଜୀ: Bitter Gourd.

**ଉପ୍ତତ୍ତି ସ୍ଥଳ:** ଅଧିକାଂଶ ଘରର ଅଗଣା, ବାଡ଼ି ବଗିଚା ଆଦି ସ୍ଥାନମାନଙ୍କରେ ରୋପଣ କରାଯାଇଥାଏ ଏବଂ କେତେକ ସ୍ଥାନରେ ସ୍ୱୟଂ ହୋଇଥାଏ ।

**ବନସ୍ପତି ବର୍ଣ୍ଣନା** ଏହା ଏକ ମୃଦୁ ଲୋମଶ ଲତା ଜାତୀୟ ବନସ୍ପତି । ପତ୍ର : ୧'' ରୁ ୫'' ଲମ୍ବା, ଗୋଲାକାର ଓ ଅଗ୍ରଭାଗ ଖଣ୍ଡିତ । ଫୁଲ : ଚିକ୍କଣ ଓ ହଳଦିଆ ରଙ୍ଗଯୁକ୍ତ । ଫଳ : ୧'' ରୁ ୮'' ଲମ୍ବ, ଉପରଭାଗ ତ୍ରିକୋଣାକୃତି, ଖଦଡ଼ିଆ, ଚିକ୍କଣ ଓ ସବୁଜ ବର୍ଣ୍ଣଯୁକ୍ତ ଏବଂ ପକ୍ୱାବସ୍ଥାରେ ହଳଦିଆ ରଙ୍ଗର ହୋଇଥାଏ । ମଞ୍ଜି : ଚେପ୍ଟା । ଏହି ବନସ୍ପତିର ସମସ୍ତଅଂଗର ଏହାର ସ୍ୱାଦ ପିତା ଅଟେ ।

**ପ୍ରଧାନ ଗୁଣ କର୍ମ** ତିକ୍ତ, ଅଗ୍ନିଦୀପକ , ଲଘୁ, ଜ୍ୱରଘ୍ନ, ରକ୍ତଦୋଷ ନାଶକ ଓ କୃମିଘ୍ନ ।

**ଔଷଧୀୟ ଉପଯୋଗୀ ଅଂଶ** ପଞ୍ଚାଙ୍ଗ

**ମାତ୍ରା** ସ୍ୱରସ : ୧୦-୨୦ ମି.ଲି. ।

## ଔଷଧୀୟ ବ୍ୟବହାର

୧. **ଅଜୀର୍ଣ୍ଣ** — ୫୦-୧୦୦ ମି.ଲି. ପତ୍ର କ୍ୱାଥ ଦିନକୁ ୨ ଥର ସେବନ କରିବ ।

୨. **କୋଷ୍ଠକାଠିନ୍ୟ** — ପତ୍ର ସ୍ୱରସ ୪ ଚାମଚ ଦିନକୁ ୨ ଥର ପିଇବ ।

୩. **ବାତରକ୍ତ** — ପତ୍ର କ୍ୱାଥ (୧ କପ୍) ରେ ଘିଅ (ଅଧ ଚାମଚ) ମିଶାଇ ଗରମ କରି ପିଇବାକୁ ଦେବ ।

Digitized by srujanika@gmail.com

| | | |
|---|---|---|
| ୪. ଯକୃତ-ପ୍ଲୀହାବୃଦ୍ଧି | | ଏହାର ପଞ୍ଚାଙ୍ଗ କ୍ୱାଥ (୧ କପ୍) ଦିନକୁ ୨ ଥର କରି ପିଇବାକୁ ଦେବ । |
| ୫. ପ୍ରମେହ | | ୧-୩ ଗ୍ରାମ୍ ମଞ୍ଜିଚୂର୍ଣ୍ଣ ପାଣି ସହିତ ମିଶାଇ ଦିନକୁ ୩ ଥର ସେବନ କରିବ । |
| ୬. ମଧୁମେହ | | ଫଳସ୍ୱରସ (୧ କପ୍) ପ୍ରତିଦିନ ସକାଳେ ପିଇବ । |
| ୭. ମିଳିମିଳା | | ହଳଦୀଗୁଣ୍ଡ (୫ ଗ୍ରାମ୍) ସହିତ ଏହାର ପତ୍ର ସ୍ୱରସ (୪ ଚାମଚ) ମିଶାଇ ପିଇବ । |
| ପ୍ରମୁଖ ଔଷଧି | : | ଶୀତଜ୍ୱରାରି ରସ |



Digitized by srujanika@gmail.com

# କୁଟଜ

**HOLARRHENA ANTIDYSENTERICA (APOCYNACEAE)**

ସଂସ୍କୃତ ନାମ: କାଳିଙ୍ଗ,କୁଟଜ, ଗିରିମଲ୍ଲିକା; ହିନ୍ଦୀ: କୁଡ଼ୈୟା;

ଇଂରାଜୀ: Kurchi

| | |
|---|---|
| ଉତ୍ପତ୍ତିସ୍ଥଳ | ଏହା ଓଡ଼ିଶାର ଜଙ୍ଗଲମାନଙ୍କରେ ଏବଂ ରାସ୍ତାକଡ଼ରେ ଆପେ ଆପେ ହୋଇଥାଏ ଓ ରୋପଣ ମଧ୍ୟ କରାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ବୃକ୍ଷ । ଏହାର ଉଚ୍ଚତା ୧୨' ରୁ ୧୫' ଫୁଟ ବିଶିଷ୍ଟ ଅଟେ । କାଣ୍ଡ: ଶ୍ୱେତାଭ ଓ କୋମଳ ଶାଖାଯୁକ୍ତ, ଶାଖାକୁ ଭାଙ୍ଗିଲେ କ୍ଷୀର ବାହାରେ । ଛାଲି: ଧୂସରବର୍ଣ୍ଣ ଓ କର୍କଶ । ପତ୍ର: ୫'' ରୁ ୧୦'' ଇଞ୍ଚ ଲମ୍ୱା ଓ ୨'' ରୁ ୪'' ଚଉଡ଼ା, ଅଣ୍ଡାକାର ଓ ମୃଦୁଲୋମଶ । ଫଳ : ଏକସଙ୍ଗରେ ୨ଟି, ଅଂଶଯୁକ୍ତ, ୮'' ରୁ ୧୬ '' ଇଞ୍ଚ ଲମ୍ୱା । ମଞ୍ଜି: ଯବଧାନପରି, ଅଧା ଇଞ୍ଚ ଲମ୍ୱା, ଏହାକୁ 'ଇନ୍ଦ୍ରଯବ' କୁହାଯାଏ । |
| ପ୍ରଧାନ ଗୁଣ କର୍ମ | କଷାୟ ରସଯୁକ୍ତ, ଅଗ୍ନିଦୀପକ, ପାଚକ, କଫ ପିତ୍ତହର । ଏହା ଅର୍ଶ, ଅତିସାର ଓ ଆମଦୋଷରେ ପ୍ରୟୋଗ କରାଯାଏ । |
| ଔଷଧୀୟ ଉପଯୋଗୀ ଅଂଶ | ଛାଲି ଓ ମଞ୍ଜି |
| ମାତ୍ରା | ଛାଲି ଚୂର୍ଣ୍ଣ : ୩-୬ ଗ୍ରାମ୍ । |
| | ମଞ୍ଜି ଚୂର୍ଣ୍ଣ: ୧-୩ ଗ୍ରାମ୍ । |
| | କ୍ୱାଥ: ୨୦-୩୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ତରଳଝାଡ଼ା | କୁଟଜ ଛାଲି କ୍ୱାଥକୁ ମହୁ ସହିତ ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

| | |
|---|---|
| ୨. ଝାଡ଼ାରେ ଲାଳ ପଡ଼ିଲେ : (ନାଳଝାଡ଼ା) | କୁଟଜଛାଲି, ଜାଇଫଳ, ମୁଥା ଓ ବେଲ ପ୍ରତ୍ୟେକ ସମାନଭାଗ ଚୂର୍ଣ୍ଣ କରି ସେଥିରୁ ୫ ଗ୍ରାମ୍ ଚହ୍ଲାଦହି ସହିତ ଦିନକୁ ୩ ଥର ସେବନ କରିବ । |
| ୩. ରକ୍ତାର୍ଶ | କୁଟଜ ଚୂର୍ଣ୍ଣ ୫ ଗ୍ରାମ୍ ନେଇ ଦହିରେ ମିଶାଇ ଦିନକୁ ୨ ଥର କରି ନିୟମିତ ସେବନ କରିବ । |
| ୪. ଅଂଶୁଘାତ | କୁଟଜ ମୂଳ ଛାଲି (୧୦ ଗ୍ରାମ୍) ଗାଈକ୍ଷୀର ୧୫୦ ମି.ଲି. ରେ ବାଟି ଛାଣିକରି ଦିନକୁ ୨-୩ ଥର ସେବନ କରିବ । |
| ୫. ସୂତ୍ରକୃମି | କୁଟଜ ମଞ୍ଜି (ଇନ୍ଦ୍ରଯବ) ଚୂର୍ଣ୍ଣ ୩ ଗ୍ରାମକୁ ମହୁ ସହିତ ମିଶାଇ ଦିନକୁ ୨ ଥର ସେବନ କରିବ । |
| ୬. ବ୍ରଣ | କୁଟଜ ପତ୍ର କିମ୍ବା ଛାଲି କ୍ୱାଥରେ ବ୍ରଣ ପ୍ରକ୍ଷାଳନ କରିବ । |
| ୭. ଶ୍ୱିତ୍ର (ଧଳାଛଉ) | କୁଟଜ ମଂଜି ୧ ଗ୍ରାମ୍ ଗୋମୂତ୍ରରେ ବାଟି ସ୍ଥାନିକ ଲେପ କରିବ । |
| ୮. ଦାନ୍ତବିନ୍ଧା | ଏହାର କୋମଳ ପତ୍ର ଚୋବାଇବ । |
| ୯. ଦାନ୍ତରୁ ରକ୍ତସ୍ରାବ | କୁଟଜମଂଜି ଚୂର୍ଣ୍ଣରେ ଦାନ୍ତମୂଳ ଘଷିବ । |
| ପ୍ରମୁଖ ଔଷଧି | କିରାତତିକ୍ତାଦି କଳ୍କ, କୁଟଜଘନବଟୀ, କୁଟଜପୁଟପାକ, କୁଟଜାରିଷ୍ଟ |



Digitized by srujanika@gmail.com

# କୋଇଲେଖା

## ASTERCANTHA LONGIFOLIA (ACANTHACEAE)

ସଂସ୍କୃତ ନାମ: ଇକ୍ଷୁରକ, କୋକିଳାକ୍ଷ; ହିନ୍ଦୀ: ତାଲମଖାନା ;

| | |
|---|---|
| ଉତ୍ପତ୍ତିସ୍ଥଳ | ଅଧିକାଂଶ ଅଞ୍ଚଳର ସାମାନ୍ୟ ପାଣିଥିବା ସ୍ଥାନ କିମ୍ବା ସନ୍ତସନ୍ତିଆ ସ୍ଥାନମାନଙ୍କରେ ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହା ୧୫ ରୁ ୯୦ ସେ.ମି ଉଚ୍ଚତା ବିଶିଷ୍ଟ ବନସ୍ପତି ଅଟେ । ପ୍ରତି ଗଣ୍ଠିର ଚାରିପଟକୁ ୧'' ଲମ୍ବର ତୀକ୍ଷ୍ଣ କଣ୍ଟା ଚକ୍ରାକାରରେ ବାହାରିଥାଏ । ପତ୍ର : ଅବୃନ୍ତ, ପ୍ରତି ଗଣ୍ଠିରେ ଚକ୍ରାକାରରେ ସାନ ବଡ଼ ଆକାରରେ ୬ ଗୋଟି ସଂଖ୍ୟାରେ ଥାଏ । ଫୁଲ: ପ୍ରତ୍ୟେକ ଗଣ୍ଠିରେ ଏକାଠି ନୀଳ-ବାଇଗଣି ରଙ୍ଗର । ଫଳ : ପତଳା, ଚେପ୍ଟା, ୮ ସେ.ମି ଲମ୍ବା, ରେଖାକାର, ଗୋଜିଆ । ମଞ୍ଜି : ରକ୍ତବର୍ଣ୍ଣ ଓ ଲୋମଯୁକ୍ତ । |
| ପ୍ରଧାନ ଗୁଣ କର୍ମ | ଅଗ୍ନିଦୀପକ, ମୂତ୍ରଳ, ଓ ବଳବୃଦ୍ଧିକର । |
| ଔଷଧୀୟ ଉପଯୋଗୀ ଅଂଶ | ମଞ୍ଜି,ପତ୍ର, ମୂତ୍ର ପଞ୍ଚାଙ୍ଗ |
| ମାତ୍ରା | ଚୂର୍ଣ୍ଣ ୩ -୬ ଗ୍ରାମ୍,କ୍ଷାର ୧-୨ ଗ୍ରାମ୍ |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ସାଧାରଣ ଜ୍ୱର | ଏହାର ପତ୍ରକୁ କ୍ୱାଥ ପ୍ରସ୍ତୁତ କରି ୧ କପ୍ କ୍ୱାଥରେ ସାମାନ୍ୟ ମହୁ ମିଶାଇ ଦିନକୁ ୨ ଥର ସେବନ କରିବ । |
| ୨. କାଶ | ଏହାର ପତ୍ର ସ୍ୱରସ ୧ ଚାମଚ ଉଷୁମ କରି ମହୁ ସହିତ ମିଶାଇ ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

୩. ଆଣ୍ଠୁଗଣ୍ଠି ଦରଜ — ପତ୍ରକୁ ବାଟି ସାମାନ୍ୟ ଉଷୁମକରି ସ୍ଥାନିକ ଲେପ କରିବ ।

୪. ଯକୃତ ବୃଦ୍ଧି — ଏହାର ମୂଳ କ୍ୱାଥ (୧କପ୍) କିମ୍ବା ପଞ୍ଚାଙ୍ଗ ଭସ୍ମ ୫୦୦ ମି.ଲି.ପାଣିରେ ମିଶାଇ ପ୍ରତିଦିନ ଦୁଇଥର ପିଇବ ।

୫. ଶୋଥ ବା ସର୍ବାଙ୍ଗ ଫୁଲାରେ — ଏହାର ସର୍ବାଙ୍ଗକୁ ପୋଡ଼ି ଭସ୍ମ କରି (୧-୨ ଗ୍ରାମ୍) ୧ କପ୍ ଗୋମୂତ୍ର କିମ୍ବା ପାଣି ସହିତ ମିଶାଇ ପିଇବ । ଅଥବା ଏହାର କ୍ୱାଥ (୧କପ୍) ଗୋଲମରିଚ ଗୁଣ୍ଡ ସହିତ ମିଶାଇ ସେବନ କରିବ ।

୬. ଧ୍ୱଜ ଭଙ୍ଗ, ଧାତୁକ୍ଷୟ — ଏହାର ମଞ୍ଜି ଚୂର୍ଣ୍ଣ (୬ ଗ୍ରାମ୍) ଚିନି ଓ ଉଷୁମ ଗାଈ କ୍ଷୀର ସହିତ ଦିନକୁ ୨ ଥର ସେବନ କରିବ ।

୭. ପିତ୍ତାଶ୍ମରୀ — ପଞ୍ଚାଙ୍ଗ କ୍ଷାର ୧-୨ ଗ୍ରାମ ପାଣି ସହିତ ପିଇବ ।

ପ୍ରମୁଖ ଔଷଧି — ଗୋକ୍ଷୁରାଦି ମୋଦକ, ଗୋକ୍ଷୁରାଦି ଗୁଗୁଲ ପୁଗପାକ,



Digitized by srujanika@gmail.com

# ଗୟଶ

## LEUCAS CEPHALOTES (LAMIACEAE)

ସଂସ୍କୃତ ନାମ : ଦ୍ରୋଣପୁଷ୍ପୀ ; ହିନ୍ଦୀ : ଗୁମା ;

ଉପ୍ତିସ୍ଥଳ : ପଥପ୍ରାନ୍ତ, ଚାଷଜମି ଓ ଅନାବନା ଘାସ ଉଠୁଥିବା ସ୍ଥାନରେ ହୋଇଥାଏ । ବିଶେଷତଃ ବର୍ଷା ଋତୁରେ ଅଧିକ ଦେଖାଯାଏ ।

ବନସ୍ପତି ବର୍ଣ୍ଣନା : ଏହା ଏକ ଗୁଳ୍ମଜାତୀୟ ବନସ୍ପତି । ଉଚ୍ଚତା- ୧୫-୯୦ ସେ.ମି, ପତ୍ର: ୫-୭.୫ ସେ.ମି ଲମ୍ବା ଓ ୧୨ ସେ.ମି ଚଉଡ଼ା ସାମାନ୍ୟ ଦନ୍ତୁରିତ ଓ ଲୋମଶ । ଫୁଲ : ଲୋମଯୁକ୍ତ, ଶାଖାର ପ୍ରତ୍ୟେକ ଗଣ୍ଠିରେ ଶ୍ୱେତବର୍ଣ୍ଣର ଛୋଟ ଛୋଟ ପୁଷ୍ପଗୁଚ୍ଛ ଫୁଲତୋଡ଼ା ପରି ଗୋଲ ଓ ଚକ୍ରାକାରରେ ରହିଥିବାର ଦେଖାଯାଏ । ପୁଷ୍ପଗୁଚ୍ଛ ଉପରେ ପ୍ରାୟ ୨ ଟି ପତ୍ର ଥାଏ ।.

ପ୍ରଧାନ ଗୁଣ କର୍ମ : ବିଷମ ଜ୍ୱର ନାଶକ, ଅଗ୍ନିବର୍ଦ୍ଧକ, ରକ୍ତଶୋଧକ ଓ କୃମିଘ୍ନ ।

ଔଷଧୀୟ ଉପଯୋଗୀ ଅଂଶ : ପଞ୍ଚାଙ୍ଗ

ମାତ୍ରା : ସ୍ୱରସ:୧୦-୨୦ ମି.ଲି.

## ଔଷଧୀୟ ବ୍ୟବହାର

୧. ବିଷମଜ୍ୱର ବା ମେଲେରିଆ ଜ୍ୱର : ଗୟସ ପତ୍ର ରସ ୪ ଚାମଚ ଏବଂ ମହୁ ୧ ଚାମଚ ସହିତ ମିଶାଇ ଦିନକୁ ୨ ଥର କରି ପିଇବାକୁ ଦେବ ।

୨. ଥଣ୍ଡା, ସର୍ଦ୍ଦି ଓ କଫଜ୍ୱର : ଏହାର ଫୁଲ ଓ ପତ୍ର ୨୦ ଗ୍ରାମ୍ ନେଇ ୨ ଗ୍ଲାସ ପାଣିରେ ଫୁଟାଇ ଦିନକୁ ୩ ଥର ପିଇବ । ଏହିପରି ୭ ଦିନ କରିବ ।

Digitized by srujanika@gmail.com

| | | |
|---|---|---|
| ୩. | ଶ୍ୱାସ ରୋଗ | ଗୟସ ପତ୍ର ରସ ୧୦ ମି.ଲି.ରେ ଅଦାରସ ୫ ମି.ଲି. ମିଶାଇ ଦିନକୁ ୩ ଥର କରି ୧ ମାସ ସେବନ କରିବ । |
| ୪. | କାମଳା | ଏହାର ପତ୍ରର ରସକୁ କଜ୍ଜ୍ୱଳପରି ଆଖିରେ ଲଗାଇବ । |
| ୫. | ଚର୍ମରୋଗ ଓ ଦୁଷ୍ଟବ୍ରଣ : | ଏହାର ପଞ୍ଚାଙ୍ଗ କ୍ୱାଥ ଦ୍ୱାରା ବ୍ରଣ ଧୋଇଲେ ଏହା ସଂକ୍ରମିତ ନ ହୋଇ ଉପଶମ ହୋଇଥାଏ । |
| ୬. | ଅଫିମର କୁପ୍ରଭାବ ଉପଶମ ପାଇଁ | ଗୟସ ପତ୍ର ରସ ୪ ଚାମଚ ନେଇ ଦିନକୁ ୩-୪ ଥର କରି ସେବନ କରିବ । |
| ୭. | ସର୍ପ ଦଂଶନ | ସର୍ପଦଂଶିତ ବ୍ୟକ୍ତିକୁ ତତ୍‌କ୍ଷଣାତ୍ ୬-୧୨ ମି.ଲି. ସ୍ୱରସ ପିଇବାକୁ ଦେବ ଓ ସ୍ଥାନିକ ଲେପ କରିବ । ଆକ୍ରାନ୍ତ ବ୍ୟକ୍ତି ସଂଜ୍ଞାହୀନ ଥିଲେ ନାକରେ ଓ ଆଖିରେ ୨-୪ ଟୋପା ରସ ୫ ମିନିଟ୍ ବ୍ୟବଧାନରେ ୩-୪ ଥର ପକାଇବ । ଏହା ପରେ ଗୟସପତ୍ର ରସ ୨୦ ମି.ଲି., ଗୋଲମରିଚ ଅଢ଼େଇ ଗ୍ରାମ୍ ଏବଂ ଲିମ୍ବପତ୍ର ୫ ଗ୍ରାମ୍ କୁ ଏକତ୍ର ବାଟି ୧୫ ମିନିଟ୍ ବ୍ୟବଧାନରେ ସରବତ କରି ୪-୫ ଥର ପିଇବାକୁ ଦେବ । ଏହିପରି ୩୦-୪୫ ମିନିଟ୍ ପର୍ଯ୍ୟନ୍ତ ଦେବ । |
| | ପ୍ରମୁଖ ଔଷଧି | କୃତମାଳାଦିକଳ୍କ , ନବଜ୍ୱରହରି ବଟୀ । |



Digitized by srujanika@gmail.com

# ଗଙ୍ଗଶିଉଳି

NYCTANTHES ARBOR-TRISTIS (OLEACEAE)

ସଂସ୍କୃତ ନାମ: ପାରିଜାତ, ଶେଫାଳିକା ; ହିନ୍ଦୀ: ହରସିଂହାର ;

ଇଂରାଜୀ: Night Jasmine.

| | |
|---|---|
| ଉତ୍ପତ୍ତିସ୍ଥଳ | ଓଡ଼ିଶାର ପ୍ରାୟ ଅଧିକାଂଶ ସ୍ଥାନ, ମନ୍ଦିରମାନଙ୍କରେ ଦେଖାଯାଏ ଓ ବଗିଚାରେ ରୋପଣ କରାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ୧୫ରୁ ୩୦ ଫୁଟ ଉଚ୍ଚତା ବିଶିଷ୍ଟ ବନସ୍ପତି । ଛାଲି: ହାଲୁକା ଧୂସରବର୍ଣ୍ଣ, ଖଦଖଦଡ଼ିଆ । ପତ୍ର: ମନ୍ଦାର ପତ୍ର ପରି କିନ୍ତୁ ରୋମଶ ଓ ଅଗ୍ରଭାବ ମୁନିଆଁ । ଫୁଲ: ଶ୍ୱେତବର୍ଣ୍ଣ ଏବଂ ଡ଼େମ୍ଫ ଈଷତ୍ ଲାଲ୍ ରଙ୍ଗ ରାତ୍ରିରେ ଫୁଟେ ଓ ସକାଳେ ଝଡ଼ିଯାଏ । |
| ପ୍ରଧାନ ଗୁଣ କର୍ମ | ଜ୍ୱରଘ୍ନ, କଫଘ୍ନ, ଯକୃତ ଉତ୍ତେଜକ ଓ ମୃଦୁବିରେଚକ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ପତ୍ର, ଫୁଲ ଓ ଛାଲି । |
| ମାତ୍ରା | ସ୍ୱରସ : ୧୦-୨୦ ମି.ଲି.<br>କ୍ୱାଥ:୫୦-୧୦୦ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ବିଷମଜ୍ୱର | ୧୦-୨୦ ମି.ଲି. ପତ୍ର ରସ ମହୁ ସହିତ ଦିନକୁ ୨ ଥର କରି ୭ ଦିନ ସେବନ କରିବ । |
| ୨. ଆମବାତ | ଏହାର ମୂଳ କ୍ୱାଥ ୫୦-୧୦୦ ମି.ଲି.ଦିନକୁ ୨ ଥର ପିଇବ । |
| ୩. ଗୃଧ୍ରସୀ (ସାଇଟିକା) : | ଏହାର ପତ୍ର କ୍ୱାଥ ୫୦-୧୦୦ ମି.ଲି. ଦିନକୁ ୨ ଥର ୨ ଚାମଚ ମହୁ ସହିତ ସେବନ କରିବ । |

Digitized by srujanika@gmail.com

୪. ବହୁମୂତ୍ର — ଏହାର କ୍ୱାଥ(୧ କପ୍) ରେ ମହୁ ମିଶାଇ ଦିନକୁ ୨ ଥର ସେବନ କରିବ ।

୫. ସୂତ୍ର କୃମି — ଏହାର ପତ୍ର ସ୍ୱରସ ୧ ଚାମଚରେ ଚିନି ମିଶାଇ ୩ ରାତି ସେବନ କରିବ ।

୬. କାଶ — ଏହାର ଛାଲି ଚୂର୍ଣ୍ଣ ୨-୩ ଗ୍ରାମ ପାନରେ ରଖି ଦିନକୁ ୩-୪ ଥର ସେବନ କରିବ ।

୭. ମୁଣ୍ଡ ବିନ୍ଧା — ଏହାର ମଞ୍ଜିକୁ ପାଣିରେ ବାଟି ମୁଣ୍ଡରେ ଲେପ କରିବ ।

୮. ଯାଦୁ — ଏହାର ପତ୍ରକୁ ଯାଦୁ ହୋଇଥିବା ସ୍ଥାନରେ ରଗଡ଼ିବା ପରେ ପତ୍ର ସ୍ୱରସ ଲଗାଇବ ।



Digitized by srujanika@gmail.com

# ଗୁଡ଼ମାରୀ

**GYMNEMA SYLVESTRE (ASCLEPIADACEAE)**

ସଂସ୍କୃତ ନାମ: ମଧୁନାଶିନୀ,ମେଷଶୃଙ୍ଗୀ ; ହିନ୍ଦୀ: ମେଢ଼ାସିଂଗୀ,ଗୁଡ଼ମାର ;

| | |
|---|---|
| ଉପ୍ତିସ୍ଥଳ | ଓଡ଼ିଶାର ଅଧିକାଂଶ ଅଞ୍ଚଳ ଓ ଆଜିକାଲି ବାଡ଼ି ବଗିଚାରେ ରୋପଣ କରାଯାଉଛି । |
| ବନସ୍ପତି ବର୍ଣ୍ଣନା | ଏହା ଏକ ଆରୋହୀ ପ୍ରସରଣଶୀଳ ଲତା ଜାତୀୟ ବନସ୍ପତି । ଏହାର କାଣ୍ଡ ପତଳା, କାଷ୍ଠ ସଦୃଶ୍ୟ ଓ ଲୋମଶ । ପତ୍ର: ଛୋଟ, ସାମାନ୍ୟ ଲୋମଶ, ଫଳ: ମେଣ୍ଢା ସିଂଘପରି କଠିନ, ଗୋଜିଆ ଓ ହରିଦ୍ ବର୍ଣ୍ଣର ହୋଇଥାଏ । ଦୁଇଟି ଫଳ ଏକା ସାଥିରେ ଥାଏ । ଗଛର ସମସ୍ତ ସ୍ଥାନରେ ଆଘାତ କଲେ କ୍ଷୀର ବାହାରିଥାଏ । ପତ୍ର ଚୋବାଇଲେ ଜିଭର ସ୍ୱାଦ ଗ୍ରହଣଶକ୍ତି ୧ - ୨ ଘଣ୍ଟା ପର୍ଯ୍ୟନ୍ତ ହ୍ରାସ ପାଇଥାଏ । |
| ପ୍ରଧାନ ଗୁଣ କର୍ମ | ତିକ୍ତ ରସଯୁକ୍ତ, ଅଗ୍ନିଦୀପକ, ପ୍ରମେହ ଓ ମଧୁମେହ ନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର ଓ ମୂଳ |
| ମାତ୍ରା | ପତ୍ରଚୂର୍ଣ୍ଣ : ୩-୬ ଗ୍ରାମ୍, ମୂଳକ୍ୱାଥ: ୫୦-୧୦୦ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ମଧୁମେହ | ପତ୍ରଚୂର୍ଣ୍ଣ ୩ ଗ୍ରାମ୍ ପ୍ରତିଦିନ ୨ ଥର ସେବନ କରିବ । |
| ୨. ଗ୍ରନ୍ଥିଶୋଥ, ବ୍ରଣଶୋଥ : | ପତ୍ର ଛେଚି ଏରଣ୍ଡ ତୈଳରେ ମିଶାଇ ଗ୍ରନ୍ଥି ଶୋଥରେ ଲେପ କରିବ । |
| ୩. କଫଜନ୍ୟ ନାସାବରୋଧ: | ପତ୍ରର ସୂକ୍ଷ୍ମଚୂର୍ଣ୍ଣ ନସ୍ୟ ନେବ । |
| ପ୍ରମୁଖ ଔଷଧି : | ନ୍ୟଗ୍ରୋଧାଦ୍ୟଚୂର୍ଣ୍ଣ |



Digitized by srujanika@gmail.com

# ଗୁଳୁଚି

## TINOSPORA CORDIFOLIA (MENISPERMACEAE)

ସଂସ୍କୃତ ନାମ : ଅମୃତା, ଗୁଡୁଚୀ, ଚକ୍ରଲକ୍ଷଣିକା ; ହିନ୍ଦୀ: ଗିଲୋୟ;

ଇଂରାଜୀ: Tinospora

| | |
|---|---|
| ଉପ୍ତତ୍ତିସ୍ଥଳ | ଓଡ଼ିଶାର ଅଧିକାଂଶ, ବଣ, ଜଙ୍ଗଲରେ ଆମ୍ବ, ନିମ୍ବ ଆଦି ଗଛ ଉପରେ ମାଡ଼ିଥିବାର ଦେଖାଯାଏ ଏବଂ ବାଡ଼ମାନଙ୍କରେ ବିଭିନ୍ନ ଗଛ ଉପରେ ମାଡ଼ିଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ଲତା ଜାତୀୟ ବନସ୍ପତି । ପତ୍ର: ପାନପରି, ଚିକ୍କଣ, ବର୍ଷା ଋତୁରେ ନୂଆପତ୍ର ବାହାରେ । ଫୁଲ: ଗ୍ରୀଷ୍ମ ଋତୁରେ ଛୋଟ ଛୋଟ, ହଳଦିଆ ରଙ୍ଗ ଓ ଗୁଚ୍ଛାକାରରେ ଆସିଥାଏ । କାଣ୍ଡ: ବୁଢ଼ା ଅଙ୍ଗୁଳି ପରି ମୋଟା, ସ୍ଥାନେ ସ୍ଥାନେ ସୂତା ପରି ଶିରାପ୍ରଶିରା ବାହାରିଥାଏ । |
| ପ୍ରଧାନ ଗୁଣ କର୍ମ | ଜ୍ୱରଘ୍ନ, ବାତହର, ଜୀବନୀୟ ଶକ୍ତି ସଂପନ୍ନ ଏବଂ ରୋଗ ପ୍ରତିରୋଧକ ଶକ୍ତି ବଢ଼ାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | କାଣ୍ଡ,ପତ୍ର, ସତ୍ତ୍ୱ (ପାଳୁଅ) |
| ମାତ୍ରା | କ୍ୱାଥ: ୫୦ ରୁ ୧୦୦ ମି.ଲି. ।<br>ସ୍ୱରସ: ୧୦ ରୁ ୨୫ ମି.ଲି.<br>ଚୂର୍ଣ୍ଣ: ୩ ରୁ ୬ ଗ୍ରାମ୍ ।<br>ସତ୍ତ୍ୱ : ୧ ରୁ ୨ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ସାଧାରଣ ଜ୍ୱର | ଏହାର କ୍ୱାଥ ଦିନକୁ ୨ ଥର କରି ସେବନ କରିବ । |

Digitized by srujanika@gmail.com

| | | |
|---|---|---|
| ୨. | ଜ୍ୱର ସହିତ ବାନ୍ତି ହେଲେ : | ଗୁଳୁଚି କ୍ୱାଥ ଥଣ୍ଡା କରି ମହୁମିଶାଇ ସେବନ କରିବ । |
| ୩. | ଆଣ୍ଠୁ ଗଣ୍ଠି ଦରଜ : | ଗୁଳୁଚି କ୍ୱାଥରେ ଶୁଣ୍ଠୀଚୂର୍ଣ୍ଣ ୩ ଗ୍ରାମ୍ ମିଶାଇ ଦିନକୁ ୨ ଥର କରି ସେବନ କରିବ । |
| ୪. | ଅସ୍ୱାଭାବିକ ଛାତି ଯନ୍ତଣା: | ଗୁଳୁଚୀ ସ୍ୱରସ ୧୦ ମି.ଲି.କୁ ମହୁ ସହିତ ମିଶାଇ ଉଷୁମ ପାଣିରେ କିମ୍ବା ଗୁଳୁଚି କ୍ୱାଥରେ ଗୋଲମରିଚ ଅଧା ଚାମଚ ମିଶାଇ ପିଇବାକୁ ଦେବ । |
| ୫. | ପ୍ରମେହ | ଗୁଳୁଚିରସ ୧୦ ମି.ଲି. ସହିତ ମହୁ ମିଶାଇ ନିୟମିତ ସେବନ କରିବ । |
| ୬. | ପୁରାତନ କାଶରେ | ଏହାର କ୍ୱାଥ ସହିତ ମହୁ ଆବଶ୍ୟକାତାନୁସାରେ ମିଶାଇ ଦିନକୁ ୨ ଥର ସେବନ କରିବ । |
| ୭. | ତୃଷ୍ଣା ବା ଅତ୍ୟଧିକ ଶୋଷ ଏବଂ ଶରୀରରେ ଜଳିୟାଂଶ କମିଗଲେ | ୨୦ ମି.ଲି. ଗୁଳୁଚି ଡ଼ାଳର ସ୍ୱରସ ଅଥବା ୫୦ ମି.ଲି. କ୍ୱାଥରେ ୫-୧୦ ଗ୍ରାମ୍ ମିଶ୍ରୀ ବା ଚିନି ଦିନରେ ୨/୩ ଥର ସେବନ କରିବ । |
| ୮. | କାମଳା ବା ଜଣ୍ଡିସ୍‌ରେ : | ଗୁଳୁଚିପତ୍ରକୁ ବାଟି (୧୦ ଗ୍ରାମ୍) ଘୋଳଦହି ସହିତ ମିଶାଇ ପିଇବ । |
| ୯. | ବାତରୋଗ | ପ୍ରତିଦିନ ୨ ଥର ଗୁଳୁଚି ରସ ୧୦ ମି.ଲି.କୁ ଅଧଚାମଚ ଉଷୁମ ଗାଇଘିଅ ସହିତ ଦେବ । |
| ୧୦. | ରସାୟନ | ପ୍ରତିଦିନ ସକାଳେ ଖାଲିପେଟରେ ଗୁଳୁଚିରସ ୧୦ ମି.ଲି. ପିଇବ । |
| | ପ୍ରମୁଖ ଔଷଧି | ଗୁଡୁଚ୍ୟାଦି ଚୂର୍ଣ୍ଣ, ଗୁଡୁଚ୍ୟାଦି ଲୌହ,ଅମୃତାରିଷ୍ଟ । |



Digitized by srujanika@gmail.com

# ଗୋଖୁରା

TRIBULUS TERRESTRIS (ZYGOPHYLLACEAE)

ସଂସ୍କୃତ ନାମ : ଗୋକଣ୍ଟକ, ଗୋକ୍ଷୁର ; ହିନ୍ଦୀ: ଗୋଖୁ ର ;

ଇଂରାଜୀ: Small Caltrops

| | |
|---|---|
| ପ୍ରାପ୍ତି ସ୍ଥାନ | ପଡ଼ିଆ, ବାଡ଼ିବଗିଚା ଓ ଚାଷଜମିରେ ବର୍ଷାଋତୁରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ପ୍ରାୟ ୨୦ ସେ.ମି ଉଚ୍ଚତା ବିଶିଷ୍ଟ । ପତ୍ର: ଚଣା ପତ୍ର ପରି, ଫୁଲ: ଛୋଟ, ପାଞ୍ଚପାଖୁଡ଼ାଯୁକ୍ତ, ହଳଦିଆ ରଙ୍ଗ । ଫଳ: ଗୋଲ, ସାମାନ୍ୟ ଚେପ୍ଟା । ଏହା ଉପରେ ୫ ଯୋଡ଼ା ବଡ଼ କଣ୍ଟା ଥାଏ ଓ ଶୁଖିଗଲାପରେ ତ୍ରିକୋଣାକାର କଣ୍ଟା ହୋଇଯାଇଥାଏ । |
| ପ୍ରଧାନ ଗୁଣ କର୍ମ | ବସ୍ତିଶୋଧକ, ଅଗ୍ନିଦୀପକ, ବୃଷ୍ୟ ଓ ପୃଷ୍ଟିକର । ଏହା ଅଶ୍ମରୀ, ପ୍ରମେହ ଓ ମୂତ୍ରଜନିତ ରୋଗରେ ହିତକର । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ଫଳ ଓ ସମସ୍ତ ଅଂଶ |
| ମାତ୍ରା | ଫଳଚୂର୍ଣ୍ଣ: ୩-୬ ଗ୍ରାମ୍, କ୍ୱାଥ: ୫୦-୧୦୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ପରିସ୍ରା ଜଳାପୋଡ଼ା | ୫୦-୧୦୦ ମି.ଲି. ଫଳ କ୍ୱାଥ ଦିନକୁ ୩ ଥର କରି ସେବନ କରିବ । |
| ୨. ପରିସ୍ରା ନ ହେଲେ | ୩-୬ ଗ୍ରାମ୍ ଫଳଚୂର୍ଣ୍ଣ ଦିନକୁ ୨-୩ ଥର ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ପଥୁରୀ ରୋଗ | ୫ ଗ୍ରାମ୍ ଫଳଚୂର୍ଣ୍ଣ ମହୁ ସହିତ ମିଶାଇ ଦିନକୁ ୨ ଥର ସେବନ କରିବ । |
| ୪. ଧାତୁକ୍ଷୟ | ଶୁଖିଲା ଗୋଖୁରା ଫଳ କ୍ୱାଥ ୫୦-୧୦୦ ମି.ଲି. ଗାଈକ୍ଷୀର ସହିତ ଦିନକୁ ୨ ଥର ସେବନ କରିବ । |
| ୫. ଆମବାତଜ ଫୁଲା; ଅଣ୍ଟାବିନ୍ଧା | ଶୁଣ୍ଠୀ ଓ ଗୋଖୁରା କ୍ୱାଥ ୫୦ ମି.ଲି. ନିୟମିତ ସକାଳେ ୧୦ ଦିନ ସେବନ କରିବ । |
| ପ୍ରମୁଖ ଔଷଧି | ଗୋଖୁରାଦି ଚୂର୍ଣ୍ଣ, ଗୋଖୁରାଦି ଗୁଗୁଳ |



Digitized by srujanika@gmail.com

# ଗୋଲାପ

## ROSA CENTIFOLIA (ROSACEAE)

ସଂସ୍କୃତ ନାମ: କର୍ଣିକା, ତରୁଣୀ, ଶତପତ୍ରୀ; ହିନ୍ଦୀ : ଗୁଲାବ;

ଇଂରାଜୀ : Rose

| | |
|---|---|
| ଉତ୍ପତ୍ତି ସ୍ଥଳ | ବାଡ଼ିବଗିଚା ଓ ଫୁଲକୁଣ୍ଡମାନଙ୍କରେ ସୁନ୍ଦରତା ପାଇଁ ଲଗାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହି ବନସ୍ପତିର ଉଚ୍ଚତା ୫'-୭' ଫୁଟ । ଶାଖା: କଣ୍ଟାଯୁକ୍ତ, ପତ୍ର: ଦନ୍ତୁରୀତ, ମୃଦୁଲୋମଶ, କୋମଳ ପତ୍ରରେ କଣ୍ଟା ନଥାଏ । ଫୁଲ: ସୁଗନ୍ଧିତ, ଗୋଲାପି ରଙ୍ଗ ଏବଂ ଏହା ଏକ ଲମ୍ବା ଦଣ୍ଡ ଉପରେ ହୋଇଥାଏ । ବର୍ତ୍ତମାନ ବିଭିନ୍ନ ରଙ୍ଗର ଫୁଲ ଦେଖିବାକୁ ମିଳେ । ଚିକିତ୍ସା ପାଇଁ ବସନ୍ତ ଋତୁରେ ହେଉଥିବା ଫୁଲକୁ ଛାୟା ଶୁଷ୍କ କରି ରଖାଯାଏ । |
| ପ୍ରଧାନ ଗୁଣ କର୍ମ | ଶୀତବୀର୍ଯ୍ୟ, ପାଚନ, ତ୍ରିଦୋଷଘ୍ନ, ପୌଷ୍ଟିକ । ଏହା ପିତ୍ତଜ ରୋଗ, ଦାହ, ତୃଷ୍ଣା ଆଦିରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ଫୁଲ |
| ମାତ୍ରା | ଚୂର୍ଣ୍ଣ : ୩-୬ ଗ୍ରାମ୍, ଅର୍କ: ୨୦-୪୦ ମି.ଲି. । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ଛାତିଯନ୍ତ୍ରଣା | ଗୋଲାପ ପୁଷ୍ପ ଚୂର୍ଣ୍ଣ ୫ ଗ୍ରାମ୍ ଓ ମିଶ୍ରିଚୂର୍ଣ୍ଣ ୫ ଗ୍ରାମ୍‌କୁ ଏକତ୍ର ମିଶାଇ ଗାଈକ୍ଷୀର ସହିତ ସେବନ କରିବ । |
| ୨. ଶିରଶୂଳ | ଗୋଲାପଫୁଲ ୩ ଗ୍ରାମ୍, ଅଳେଇଚ ୩ ଗ୍ରାମ୍ |

Digitized by srujanika@gmail.com

ଓ ମିଶ୍ରି ୩ ଗ୍ରାମକୁ ଏକାଠି ମିଶାଇ ଥଣ୍ଡା ପାଣି ସହ ପିଇବ । ଏହିପରି ଦିନକୁ ୨-୩ ଥର ସେବନ କରିବ ।

୩. ପ୍ରଦର, ମୂତ୍ରଦାହ : ଏହାର ଫୁଲଚୂର୍ଣ୍ଣ ୫ ଗ୍ରାମ୍‌ରେ ସାମାନ୍ୟ ମିଶ୍ରି ମିଶାଇ ଗାଈକ୍ଷୀର ସହିତ ଦିନକୁ ୨ ଥର କରି ନିୟମିତ ସେବନ କରିବ ।

୪. ଦନ୍ତରୋଗ — ଗୋଲାପ ଫୁଲ ଡ଼େମ୍ଫ ସହିତ ପ୍ରତିଦିନ ଚୋବାଇ କରି ସେବନ କଲେ ଦାନ୍ତମାଢ଼ି ଦୃଢ଼ ହୁଏ ଏବଂ ଦାନ୍ତରୁ ରକ୍ତସ୍ରାବ ବନ୍ଦ ହୁଏ ।

୫. ଆଖିଧରା — ଗୋଲାପ ଫୁଲ ସ୍ୱରସ ୨-୩ ଟୋପା ଆଖିରେ ପକାଇବ ।

୬. ମୁଖବ୍ରଣ — ଗୋଲାପଜଳରେ ଶ୍ୱେତଚନ୍ଦନ ଏବଂ ପେସ୍ତାବାଦାମକୁ ବାଟି ମୁହଁରେ ଲେପ କରିବ ।



Digitized by srujanika@gmail.com

# ଘିକୁଆଁରୀ

## ALOE BARBADENSIS (LILIACEAE)

ସଂସ୍କୃତ ନାମ: କନ୍ୟା, କୁମାରୀ, ଘୃତକୁମାରୀ; ହିନ୍ଦୀ: ଗ୍ୱାରପାଠା;

ଇଂରାଜୀ : Indian Aloe

| | |
|---|---|
| ଉତ୍ପତ୍ତି ସ୍ଥଳ | ଏହା ଆପେ ଆପେ ଉଠିଥାଏ ଏବଂ ଚାଷ ମଧ୍ୟ ହୋଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହି ବନସ୍ପତିର ଉଚ୍ଚତା ୧' ରୁ ୨' ଫୁଟ । ପତ୍ର: ମାଂସଳ, ମୋଟା, ୪୫ ରୁ ୬୦ ସେ.ମି ଲମ୍ବା, ସିଧା, ଚୌଡ଼ା, ଧାର ଦନ୍ତୁରିତ । ପତ୍ରକୁ କାଟିଲେ ନେଳି ରଙ୍ଗର ମୋଟା ରସ ବାହାରେ । ଫୁଲ: ପତ୍ରଗୁଡ଼ିକ ମଧ୍ୟରେ ଲମ୍ବାପୁଷ୍ପଦଣ୍ଡ ବାହାରିଥାଏ ଏଥିରେ ହଳଦିଆ ବା କମଳା ରଙ୍ଗର ଫୁଲ ଆସିଥାଏ । |
| ପ୍ରଧାନ ଗୁଣ କର୍ମ | ଭେଦନ, ଦୀପନ, ପାଚନ, ବଳକାରକ, ଶୋଥନାଶକ, ବ୍ରଣରୋପଣ ଓ ନେତ୍ର ପାଇଁ ହିତକର । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର । |
| ମାତ୍ରା : | ପତ୍ରସ୍ୱରସ : ୧୦-୨୦ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅମ୍ଳପିତ୍ତ | ୧୦-୨୦ ମି.ଲି. ପତ୍ର ରସ ଦିନକୁ ୨ ଥର କରି ୧୫ ଦିନ ପର୍ଯ୍ୟନ୍ତ ସେବନ କରିବ । |
| ୨. ପ୍ଲୀହା, ଯକୃତ ବୃଦ୍ଧି | ୧୦-୨୦ ମି.ଲି. ପତ୍ରର ତାଜାରସ ୧-୩ ଗ୍ରାମ୍ ଶରପୁଙ୍ଖା (କୋଳଥିଆଗଛ) ର ପଞ୍ଚାଙ୍ଗଚୂର୍ଣ୍ଣ ସହିତ ମିଶାଇ ଦିନକୁ ୨ ଥର କରି ୧୫ ଦିନ ପର୍ଯ୍ୟନ୍ତ ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ଅଗ୍ନିଦଗ୍ଧ ବ୍ରଣ ; ଶିରଶୂଳ | ପତ୍ରର ତାଜାରସ ସ୍ଥାନିକ ଲେପ କରିବ । |
| ୪. କଷ୍ଟାର୍ତ୍ତବ | ୧୦-୨୦ ମି.ଲି. ପତ୍ରରସ ୫୦୦ ମି.ଗ୍ରା ଭଜାହିଙ୍ଗୁ ସହିତ ଦିନକୁ ୨ଥର ସେବନ କରିବ । |
| ୫. କୁଣ୍ଡିଆ | ଘିକୁଆଁରୀ ରସରେ ହଳଦୀ ବାଟି ଦେହରେ ଲଗାଇବେ । |
| ପ୍ରମୁଖ ଔଷଧି | କୁମାର୍ଯ୍ୟାସବ, କୁମାରିକାବଟୀ, ରକ୍ତ ପ୍ରବର୍ତ୍ତନୀ ବଟୀ । |



Digitized by srujanika@gmail.com

# ଚାକୁଣ୍ଡା

## CASSIA TORA (CAESALPINIACEAE)

ସଂସ୍କୃତ ନାମ: ଦଦ୍ରୁଘ୍ନ, ଚକ୍ରମର୍ଦ୍ଦ; ହିନ୍ଦୀ: ଚକବଡ଼;

ଇଂରାଜୀ : Ring-worm plant.

ଉପ୍ତତ୍ତିସ୍ଥଳ — ଏହା ରାସ୍ତାକଡ଼, ପଡ଼ିଆ ଆଦି ସ୍ଥାନମାନଙ୍କରେ ଦେଖାଯାଏ ।

ବନସ୍ପତି ବର୍ଣ୍ଣନା — ଏହା ୧-୫ ଫୁଟ ଉଚ୍ଚତା ବିଶିଷ୍ଟ ବନସ୍ପତି । ଏହାର ଆୟୁ ୧ ବର୍ଷ ଅଟେ । ଏହାର ପତ୍ର: ମେଥିପତ୍ର ପରି, ମକଚିଲେ ଦୁର୍ଗନ୍ଧ ବାହାରେ । ଫୁଲ:ଛୋଟ, ହଳଦିଆ ରଙ୍ଗ । ଫଳ: ଶିମ୍ବପରି, ପତଳା ଓ ୬-୧୨'' ଇଞ୍ଚ ଲମ୍ବା । ମଞ୍ଜି: ମେଥିପରି, ଚିକ୍କଣ ଓ ଟାଣ । ବର୍ଷାଋତୁରେ ପୁଷ୍ପ ଓ ଶୀତ ଋତୁରେ ଫଳ ହୋଇଥାଏ ।

ପ୍ରଧାନ ଗୁଣ କର୍ମ — ଶୀତବୀର୍ଯ୍ୟ, କୁଷ୍ଠଘ୍ନ, କଫବାତ ଶାମକ, ଏହା ଯାଦୁ, କଣ୍ଡୁ ଓ ଜ୍ୱରରେ ପ୍ରୟୋଗ କରାଯାଏ ।

ଔଷଧୀୟ ଉପଯୋଗୀ ଅଂଶ — ପଞ୍ଚାଙ୍ଗ

ମାତ୍ରା — ପତ୍ର ସ୍ୱରସ: ୧୦-୨୦ ମି.ଲି.
ମଞ୍ଜିଚୂର୍ଣ୍ଣ : ୧-୩ଗ୍ରାମ୍, ପତ୍ରଚୂର୍ଣ୍ଣ ୩-୬ ଗ୍ରାମ୍

## ଔଷଧୀୟ ବ୍ୟବହାର

୧. ଶୀତପିତ୍ତ (ଏଲର୍ଜି) — ଏହାର ମୂଳ ଚୂର୍ଣ୍ଣ ୩ ଗ୍ରାମ୍‌କୁ ଘିଅ ୧ ଚାମଚ ସହିତ ମିଶାଇ ୭ ଦିନ ସେବନ କରିବ ।

୨. ସର୍ବାଙ୍ଗ ଶୋଥ ବା ଫୁଲା: ଏହାର ପତ୍ରକୁ ପାଣିରେ ସିଝାଇ ଚିପୁଡ଼ି ୬୦ ମି.ଲି. ସିଝାପାଣି ଦିନକୁ ୩ ଥର କରି ୭ ଦିନ ପର୍ଯ୍ୟନ୍ତ ସେବନ କରିବ ।

Digitized by srujanika@gmail.com

୩. ଯାବୁ : ଚାକୁଣ୍ଡା ମଞ୍ଜିଚୂର୍ଣ୍ଣ (୩ ଗ୍ରାମ୍) କୁ ଲେମ୍ବୁରସ ସହିତ ସେବନ କରିବ ଓ ସ୍ଥାନିକ ଲେପ କରିବ ଅଥବା ମଞ୍ଜିଚୂର୍ଣ୍ଣକୁ ତୁଳସୀପତ୍ର ରସ ସହିତ ସ୍ଥାନିକ ଲେପ କରିବ ।

୪. କଟିଶୂଳ ଏହାର ମଞ୍ଜିକୁ ସାମାନ୍ୟ ଭାଜି ଗୁଣ୍ଡ କରିବ । ଏହି ଗୁଣ୍ଡ ୫ ଗ୍ରାମ୍‌ରେ ସାମାନ୍ୟ ଘିଅ ଓ ଗୁଡ଼ ମିଶାଇ ମୋଦକ ପରି କରି ପ୍ରତିଦିନ ୨ ଥର ଲେଖାଏଁ ୧୫ ଦିନ ସେବନ କରିବ ।

୫. ରକ୍ତଦୋଷ ଭଜାଯାଇଥିବା ମଞ୍ଜି ଚୂର୍ଣ୍ଣ (୩ ଗ୍ରାମ୍), ମିଶ୍ରି ଓ ଗାଈଘିଅ ୧ ଚାମଚ ଏକତ୍ର ମିଶାଇ ଦିନକୁ ୨ ଥର ସେବନ କରିବ ।

୬. କୋଷ୍ଠକାଠିନ୍ୟ ଚାକୁଣ୍ଡା ପତ୍ରଚୂର୍ଣ୍ଣ (୫ ଗ୍ରାମ୍) କୁ ଉଷୁମ ପାଣି ସହିତ ସେବନ କରିବ ।

୭. ବିଚର୍ଚ୍ଚିକା (ଏକ୍‌ଜିମା) : ମଞ୍ଜିଚୂର୍ଣ୍ଣକୁ ଲେମ୍ବୁରସ ଓ ନଡ଼ିଆତେଲରେ ମିଶାଇ ସ୍ଥାନିକ ଲେପ କରିବ ।

୮. କଙ୍କଡ଼ାବିଛା କାମୁଡ଼ିଲେ : ଏହାର ପତ୍ର ୬୦ ଗ୍ରାମ୍‌କୁ ବାଟି ଦଂଶନ ସ୍ଥାନରେ ଲେପ କରିବ ।

୯. ଶ୍ୱିତ୍ର (ଧଳାଛଉ) ଏହାର ମଞ୍ଜି ଓ ବାକୁଚି ମଞ୍ଜିକୁ ଏକତ୍ର କାଞ୍ଜିରେ ବାଟି ସ୍ଥାନିକ ଲେପ କରିବ ।

୧୦. ଅଧକପାଳି ବ୍ୟଥା ମଞ୍ଜିକୁ କାଞ୍ଜିରେ ବାଟି କପାଳରେ ଲେପ କରିବ ।

ପ୍ରମୁଖ ଔଷଧ ଦଦ୍ରୁଘ୍ନୀ ବଟୀ, ଚକ୍ରମର୍ଦ୍ଦ ତୈଳ ।



Digitized by srujanika@gmail.com

# ଚିତାପାରୁ

## PLUMBAGO ZEYLANICA (PLUMBAGINACEAE)

ସଂସ୍କୃତ ନାମ: ଅଗ୍ନି, ଚିତ୍ରକ ; ହିନ୍ଦୀ: ଚୀତା ;

ଇଂରାଜୀ : White Leadwort.

| | |
|---|---|
| ଉତ୍ପତ୍ତିସ୍ଥଳ | ପଡ଼ିଆ, ରାସ୍ତାକଡ଼, ବଗିଚାମାନଙ୍କରେ ବୁଦା ସଦୃଶ ଓ ଜଙ୍ଗଲ ପରି ହୋଇଥିବାର ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହି ୨'-୪' ଫୁଟ ଉଚ୍ଚତା ବିଶିଷ୍ଟ ଗୁଳ୍ମ ବର୍ଷତମାମ ରହିଥାଏ । ପତ୍ର: ଚିକ୍କଣ, କୋମଳ, ଅଣ୍ଡାକାର । ଫୁଲ: ଧଳା, ଚମେଲି ଫୁଲ ପରି । ଫଳ: ଯବ ପରି ଓ ଲମ୍ବା, ଅଠାଳିଆ, ଧୂସର ବା କଳାରଙ୍ଗ । ମୂଳ: ଅଙ୍ଗୁଳିପରି, ବାହାରଭାଗ କୃଷ୍ଣବର୍ଣ୍ଣ । ଏହାକୁ ଧଳାଚିତା କୁହାଯାଏ । |
| ପ୍ରଧାନ ଗୁଣ କର୍ମ | ଅଗ୍ନିଦୀପକ, ଗର୍ଭାଶୟ ସଂକୋଚକ, ସ୍ୱେଦଜନକ, କୃମିଘ୍ନ, ବାତ ଓ କଫ ଦୋଷନାଶକ । |
| ଔଷଧୀୟ ଉପଯୋଗୀ ଅଂଶ : | ମୂଳ |
| ମାତ୍ରା | ଚୂର୍ଣ୍ଣ: ୧-୨ ଗ୍ରାମ୍ |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅର୍ଶ | ଚିତ୍ରକମୂଳ ଛାଲି ଚୂର୍ଣ୍ଣ ୨ ଗ୍ରାମକୁ ଗୋମୂତ୍ର ୧ କପ୍ ସହିତ ପ୍ରତିଦିନ ସେବନ କରିବ ଏବଂ ସ୍ଥାନିକ ଲେପ କରିବ କିମ୍ୱା ଚିତାପାରୁ, ହରିଡ଼ା ଓ ଶୁଣ୍ଠୀ ପ୍ରତ୍ୟେକ ୫ ଗ୍ରାମ୍ ଲେଖାଏଁ ନେଇ କ୍ୱାଥ ପ୍ରସ୍ତୁତ କରି ସେଥିରେ ସାମାନ୍ୟ ଯବକ୍ଷାର ପକାଇ ସେବନ କରିବ । |

Digitized by srujanika@gmail.com

୨. ସୂତୀକାଜ୍ୱର : ଚିତାପାରୁ ମୂଳ ଚୂର୍ଣ୍ଣ (୨ ଗ୍ରାମ୍)କୁ ବେଗୁନିଆ ପତ୍ର ରସ ସହିତ ଦିନକୁ ୨ ଥର କରି ଦେବ ।

୩. ଅଗ୍ନିମାନ୍ଦ୍ୟ ଚିତାମୂଳ ଚୂର୍ଣ୍ଣ (୨ ଗ୍ରାମ୍) କୁ ମହୁ ସହିତ ମିଶାଇ ସେବନ କରିବ ।

୪. ବାନ୍ତି (ବାଳକମାନଙ୍କର): ଚିତାମୂଳ ୧ ଗ୍ରାମ୍, ପିପ୍ପଳୀମୂଳ ୧ ଗ୍ରାମ୍ ଓ ଶୁଣ୍ଠୀ ୧ ଗ୍ରାମ୍ ଏକତ୍ର ମିଶାଇ ମହୁ ସହିତ ସେବନ କରିବ ।

୫. ଗ୍ରହଣୀ ଚିତାମୂଳ ୨ ଗ୍ରାମ୍, ଗୋଲମରିଚ ୨ ଗ୍ରାମ୍ ଓ ଜିରା ୨ ଗ୍ରାମ୍ ଏକତ୍ର ଚୂର୍ଣ୍ଣକରି ଦିନକୁ ୨ ଥର କରି ନିୟମିତ ୭ ଦିନ ସେବନ କରିବ ।

୬. ତରଳଝାଡ଼ା ଚିତାମୂଳ ଚୂର୍ଣ୍ଣ ୨ ଗ୍ରାମ୍, ଚହ୍ଲାଦହି ସହିତ ଦିନକୁ ୩ ଥର ସେବନ କରିବ ।

୭. ପାଣ୍ଡୁରୋଗ : ଚିତାମୂଳଚୂର୍ଣ୍ଣ ଓ ବଜ୍ରମୂଳୀ ମୂଳ ଚୂର୍ଣ୍ଣ ପ୍ରତ୍ୟେକ ୨ ଗ୍ରାମ୍ ଲେଖାଏଁ ନେଇ ମହୁ ସହିତ ସେବନ କରିବ ।

୮. ଶ୍ୱିତ୍ର (ଧଳାଛଉ) ଚିତାମୂଳଚୂର୍ଣ୍ଣ (୨ ଗ୍ରାମ୍) କୁ ଗୋମୂତ୍ର (୧ କପ୍) ସହିତ ଦିନକୁ ୨ ଥର କରି ୩ ମାସ ସେବନ କରିବ ଏବଂ ମୂଳଚୂର୍ଣ୍ଣକୁ ତୁଳସୀ ସହିତ ବାଟି ସ୍ଥାନିକ ଲେପ କରିବ ।

୯. ଶ୍ଳୀପଦ (ଗୋଦର ଗୋଡ଼,ହାତ) : ଚିତାମୂଳକୁ ଗୋମୂତ୍ରରେ ବାଟି ସ୍ଥାନିକ ଲେପ କରିବ ।

୧୦. ଯାକୁ : ଚିତାମୂଳଚୂର୍ଣ୍ଣକୁ ଘିଅରେ ମିଶାଇ ସ୍ଥାନିକ ଲେପ କରିବ ।

ପ୍ରମୁଖ ଔଷଧି : ଚିତ୍ରକାଦି ଗୁଟିକା, ଚିତ୍ରକ ହରିତକୀ, ଚିତ୍ରକଘୃତ ।



Digitized by srujanika@gmail.com

# ଜଡ଼ା

## RICINUS COMMUNIS (EUPHORBIACEAE)

ସଂସ୍କୃତ ନାମ: ଏରଣ୍ଡ, ଗନ୍ଧର୍ବହସ୍ତ; ହିନ୍ଦୀ: ରେଡ଼ୀ;

ଇଂରାଜୀ : Castor Oil Plant

ଉତ୍ପତ୍ତି ସ୍ଥଳ : ବାଡ଼ି ବଗିଚା ଓ ପଡ଼ିଆ ଆଦି ସ୍ଥାନରେ ସ୍ୱତଃ ହୋଇଥାଏ । ବ୍ୟବସାୟିକ ଦୃଷ୍ଟିକୋଣରୁ ଏହାର ଚାଷ ମଧ୍ୟ କରାଯାଇଥାଏ ।

ବନସ୍ପତି ବର୍ଣ୍ଣନା : ଏହି ବୃକ୍ଷର ଉଚ୍ଚତା ପ୍ରାୟ ୬ ମିଟର । ପତ୍ର: ହାତର ପାପୁଲି ସଦୃଶ ଓ ଦନ୍ତୁରିତ । ଫୁଲ: ଲାଲ୍ କିମ୍ୱା ବାଇଗଣ ରଙ୍ଗଯୁକ୍ତ ଓ ବୃନ୍ତରେ ପେନ୍ଥା ଆକାରରେ ହୋଇଥାଏ । ଫଳ:ଗୋଲ ଓ ଗୁଚ୍ଛ ଆକାରରେ ଥାଏ । ଏହାର ଉପରି ଭାଗରେ ବହୁତ କୋମଳ କଣ୍ଟା ଥାଏ । ପକ୍ୱାବସ୍ଥାରେ ଫଳ ଫାଟିଯାଇ ତଳେ ପଡ଼େ ଓ ମଞ୍ଜିରୁ ତେଲ ବାହାର କରାଯାଇଥାଏ ।

ପ୍ରଧାନ ଗୁଣ କର୍ମ : କୋଷ୍ଠ ଶୁଦ୍ଧିକର, ବାତନାଶକ, ଦାହ ଶାମକ, ସ୍ତନ୍ୟ କାରକ ଓ ବଳକାରକ ଅଟେ । ଏହାକୁ ଆମବାତ ଓ ଗଣ୍ଠିବାତ ଆଦିରେ ବ୍ୟବହାର କରାଯାଇଥାଏ ।

ଔଷଧୀୟ ଉପଯୋଗୀ ଅଂଶ : ମୂଳ, ପତ୍ର, ମଞ୍ଜି ଓ ତେଲ ।

ମାତ୍ରା : ମୂଳଛାଲି ଚୂର୍ଣ୍ଣ- ୫ ଗ୍ରାମ୍,
ମୂଳ ଛାଲି କ୍ୱାଥ - ୫୦ରୁ ୧୦୦ ମି.ଲି.,
ତେଲ-୫ ରୁ ୧୦ ଟୋପା ।

### ଔଷଧୀୟ ବ୍ୟବହାର

୧. କୋଷ୍ଠ କାଠିନ୍ୟରେ : ଏକ ଚାମଚ ଜଡ଼ା ତେଲକୁ ଉଷୁମ ପାଣିରେ ରାତ୍ରିରେ ଶୋଇବା ପୂର୍ବରୁ ପିଇବାକୁ ଦେବ ।

Digitized by srujanika@gmail.com

୨. ଉଦର ଶୂଳ ରୋଗରେ : ଜଡ଼ା ମୂଳ ୫ ଗ୍ରାମ୍ ଓ ଶୁଣ୍ଠି ୫ ଗ୍ରାମ୍ ଏକତ୍ର ନେଇ କ୍ୱାଥ ପ୍ରସ୍ତୁତ କରି ସେଥିରେ ସାମାନ୍ୟ ହିଙ୍ଗୁ ଓ ସୈନ୍ଧବଲବଣ ମିଶାଇ ପିଇବାକୁ ଦେବ ।

୩. ଆମବାତ — ଏହାର ମୂଳ ୨୦ ଗ୍ରାମ୍ ନେଇ୨ ଗ୍ଲାସ ପାଣିରେ ସିଝାଇ ଅବଶିଷ୍ଟ ଅଧ ଗ୍ଲାସକୁ ପ୍ରତିଦିନ ଖାଇବା ପରେ ଦିନକୁ ୨ ଥର ପିଇବ ।

୪. ବାତଜ୍ୱର — ଜଡ଼ା ତେଲ ଅଧ ଚାମଚକୁ ୪ ଚାମଚ ଗୋମୂତ୍ରରେ ମିଶାଇ ଦିନକୁ ୨ ଥର ସେବନ କରିବ ।

୫. ଆଣ୍ଠୁଗଣ୍ଠି ଦରଜ — ଜଡ଼ା ମଞ୍ଜିକୁ ବାଟି ସାମାନ୍ୟ ଉଷୁମ କରି ସ୍ଥାନିକ ଲେପ କରିବ କିମ୍ବା ଏହାର ପତ୍ରକୁ ରାଶି ତେଲରେ ଭାଜି ବେଦନା ସ୍ଥାନରେ ବାନ୍ଧି ଦେବ ।

୬. ବଥ ଘା' ରେ — ଏହାର ମଞ୍ଜିକୁ ବାଟି ସାମାନ୍ୟ ଉଷୁମ କରି ଲେପ କରିବ ।

୭. ସୂତ୍ର କୃମି — ପତ୍ର ରସକୁ ତୁଳାରେ ଭିଜାଇ ମଳ ଦ୍ୱାର ପାଖରେ ରଖିଲେ ସୂତ୍ରକୃମି ପଦାକୁ ଚାଲିଆସନ୍ତି ।

ପ୍ରମୁଖ ଔଷଧି : ଏରଣ୍ଡତୈଳ, ତ୍ରିକଣ୍ଟକାଦ୍ୟଘୃତ, ରାସ୍ନାସପ୍ତକ କ୍ୱାଥ ।



Digitized by srujanika@gmail.com

# ଡାଳିମ୍ବ

## PUNICA GRANATUM (PUNICACEAE)

ସଂସ୍କୃତ ନାମ: ଦନ୍ତବୀଜ, ଦାଡ଼ିମ, ଲୋହିତପୁଷ୍ପକ; ହିନ୍ଦୀ: ଅନାର ;

ଇଂରାଜୀ : Pomegranate

| | | |
|---|---|---|
| ଉତ୍ପତ୍ତିସ୍ଥଳ | : | ପ୍ରାୟ ବାଡ଼ିବଗିଚାରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | | ଏହା ୩-୫ ମି. ଉଚ୍ଚତା ବିଶିଷ୍ଟ ଅନେକ ଶାଖା ପ୍ରଶାଖାଯୁକ୍ତ ବନସ୍ପତି । ଶାଖା ପ୍ରଶାଖାରେ କଣ୍ଟା ଥାଏ । ପତ୍ର: ବିପରିତ, ୨.୫ରୁ ୭.୫ ସେ.ମି ଲମ୍ବା । ଫୁଲ: କୁଞ୍ଚିତ ଓ ଲାଲ୍, ଫଳ: ୫ ରୁ ୮ ସେ.ମି. ପରିଧିଯୁକ୍ତ । ମଞ୍ଜି: ଲାଲ୍, ଈଷଦ୍‌ଲାଲ୍ କିମ୍ବା ଧଳା । ଗୋଟିଏ ଫଳରେ ବହୁତ ମଞ୍ଜି ଥାଏ । |
| ପ୍ରଧାନ ଗୁଣ କର୍ମ | | ଅଗ୍ନିଦୀପକ, ଗ୍ରାହୀ ଏବଂ ମୁଖ ଦୁର୍ଗନ୍ଧ ନାଶକରେ । |
| ଔଷଧୀୟ ଉପଯୋଗୀ ଅଂଶ | | ସଂପୂର୍ଣ୍ଣ ଫଳ, ପତ୍ର, ଫୁଲ, ଛାଲି ଓ ମଞ୍ଜି । |
| ମାତ୍ରା | | ଫଳ ସ୍ୱରସ: ୨୦-୫୦ ମି.ଲି.<br>ଛାଲି କ୍ୱାଥ: ୪୦-୮୦ ମି.ଲି. ।<br>ଛାଲି ଓ ଫଳ ଚୋପା ଚୂର୍ଣ୍ଣ ୧-୩ ଗ୍ରାମ୍ |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅଜୀର୍ଣ୍ଣ, ଅରୁଚି | ୧୫ ମି.ଲି. ଫଳରସରେ ୧ ଗ୍ରାମ୍ କଳାଲୁଣ ମିଶାଇ ଅଥବା ଭଜାଜିରା ଗୁଣ୍ଡ ୧ ଚାମଚ ମିଶାଇ ମହୁ କିମ୍ବା ଚିନି ସହିତ ସେବନ କରିବ । |
| ୨. ରକ୍ତ ଝାଡ଼ା | ୩ ଗ୍ରାମ୍ ମୂଳ ଛାଲି କିମ୍ବା ଫଳ ଚୋପା ଚୂର୍ଣ୍ଣ ମହୁ ସହିତ ମିଶାଇ ଦିନରେ ୩ ଥର ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ରକ୍ତାର୍ଶ | ୧୦ ମି.ଲି. ଫଳରସ ଚିନି ସହିତ ଦିନରେ ୨ ଥର ସେବନ କରିବ । |
| ୪. ନାସାରୁ ରକ୍ତସ୍ରାବ | ୭-୧୪ ମି.ଲି. ଫଳରସ ଦିନରେ ୨ ଥର କରି ୩ ଦିନ ସେବନ କରିବ । |
| ୫. ଯୋଷାପସ୍ମାର (ହିଷ୍ଟେରିଆ) | ଏହାର ପତ୍ର ଓ ଗୋଲାପଫୁଲ ଏକତ୍ର କ୍ୱାଥ ପ୍ରସ୍ତୁତ କରି ୪୦-୮୦ ମି.ଲି. ଦିନକୁ ୨ ଥର ସେବନ କରିବ । |
| ପ୍ରମୁଖ ଔଷଧ | ଦାଡ଼ିମାଦି ଚୂର୍ଣ୍ଣ, ଦାଡ଼ିମାଦ୍ୟଘୃତ, ଦାଡ଼ିମାଦ୍ୟତୈଳ । |



Digitized by srujanika@gmail.com

# ଡ଼ିମିରୀ

## FICUS GLOMERATA (MORACEAE)

ସଂସ୍କୃତ ନାମ: ଉଦୁମ୍ବର, ଯଜ୍ଞାଙ୍ଗ ; ହିନ୍ଦୀ: ଗୁଲର ;

ଇଂରାଜୀ : Cluster fig.

| | |
|---|---|
| ଉପ୍ତିସ୍ଥଳ | ଓଡ଼ିଶାର ଅଧିକାଂଶ ସ୍ଥାନ, ପାହାଡ଼ିଆ ଅଂଚଳ ଓ ନଦୀ ନାଳ ନିକଟରେ ଏହା ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ବୃକ୍ଷ । ପତ୍ର:କର୍କଶ ୫-୭'' ଇଞ୍ଚ ଲମ୍ବା, ଅଣ୍ଡାକାର, ଫଳ: ଛୋଟ, ଗୋଲ, ବରଫଳ ପରି ଏବଂ ଗୁଚ୍ଛାକାର, ବୃକ୍ଷର ଶାଖାରେ ହୋଇଥାଏ । ପକ୍ୱାବସ୍ଥାରେ ଲାଲ ଦେଖାଯାଏ । |
| ପ୍ରଧାନ ଗୁଣ କର୍ମ | ଏହା କଷାୟରସ, ଶୀତବୀର୍ଯ୍ୟ, ଶରୀରର ବର୍ଣ୍ଣ ସୁନ୍ଦର ରଖେ, ବ୍ରଣ, ରକ୍ତଦୋଷ ଦୂର କରେ ଏବଂ ପ୍ରଦର ଓ ମଧୁମେହରେ ଏହା ଫଳଦାୟକ ଅଟେ । |
| ଔଷଧୀୟ ଉପଯୋଗୀ ଅଂଶ | ଫଳ, ଛାଲି, ମୂଳ ଓ କ୍ଷୀର |
| ମାତ୍ରା | ଚୂର୍ଣ୍ଣ:୩-୬ ଗ୍ରାମ୍, କ୍ୱାଥ: ୫୦-୧୦୦ ମି.ଲି., କ୍ଷୀର: ୫-୧୦ ବୁନ୍ଦା । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଶ୍ୱିତ୍ର (ଧଳାଛଉ) | ଏହାର ଫଳ ରସ ୪ ଚାମଚକୁ ୨ ଚାମଚ ପୁରୁଣା ଗୁଡ଼ ସହିତ ଦିନକୁ ୨ ଥର ସେବନ କରିବ । |
| ୨. ନାସାରୁ ରକ୍ତସ୍ରାବ | ଡ଼ିମିରି ଫଳ ରସ ୪ ଚାମଚ ପ୍ରତିଦିନ ପିଇବ । |

Digitized by srujanika@gmail.com

୩. ରକ୍ତପ୍ରଦର : ଏହାର ଫଳ ରସ ୪ ଚାମଚକୁ ୧/୨ ଚାମଚ ମହୁ ସହିତ ଦିନକୁ ୨ ଥର ସେବନ କରିବ ।

୪. ମଧୁମେହ : ଏହାର ମୂଳ କିମ୍ବା ଫଳରସ ୪ ଚାମଚ ଦିନକୁ ୨ ଥର କରି ସେବନ କରିବ ।

୫. ରକ୍ତାତିସାର : ଏହାର କ୍ଷୀର ୧୦ ବୁନ୍ଦା ଅଧ କପ୍ ଉଷୁମ ଗାଈକ୍ଷୀର ସହିତ ଦିନକୁ ୨ ଥର କରି ପିଇବାକୁ ଦେବ ।

ପ୍ରମୁଖ ଔଷଧି : ଉଦୁମ୍ବର ସାର, ନ୍ୟଗ୍ରୋଧାଦ୍ୟ ଚୂର୍ଣ୍ଣ ।



Digitized by srujanika@gmail.com

# ତୁଳସୀ

## OCIMUM SANCTUM (LAMIACEAE)

ସଂସ୍କୃତ ନାମ: ତୁଳସୀ, ସୁରସା ; ହିନ୍ଦୀ : ତୁଲ୍‌ସୀ ;

ଇଂରାଜୀ: Sacred Basil

| | |
|---|---|
| ଉପ୍ତିସ୍ଥଳ | ସର୍ବତ୍ର । ବିଶେଷତଃ ମନ୍ଦିର ପ୍ରାଙ୍ଗଣ, ମଠ, ହିନ୍ଦୁ ମାନଙ୍କର ଘରେ ରୋପଣ କରାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହାର ଉଚ୍ଚତା ୬୦ ରୁ ୯୦ ସେ.ମି ଓ ଶାଖା ସିଧା ଏବଂ ପ୍ରସାରିତ । ପତ୍ର: ଅଣ୍ଡାକାର, ସାମାନ୍ୟ ଦନ୍ତୁରିତ ଓ ସୁଗନ୍ଧିତ । ଶାଖାର ଅଗ୍ରଭାଗରେ ଫୁଲ ମଞ୍ଜରୀ ବା ଛଟା ହୋଇଥାଏ । ଏଥିରୁ ଛୋଟ ଛୋଟ ମଞ୍ଜି ସଂଗ୍ରହ କରାଯାଏ । ମୁଖ୍ୟତଃ ଧଳା ଓ କଳା ଭେଦରେ ଏହା ଦୁଇ ପ୍ରକାର ଅଟେ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ ଗୁଣ ଯୁକ୍ତ, ହୃଦୟ ଦୌର୍ବଲ୍ୟ ନାଶକ, କଫ, କାଶ, ଶ୍ୱାସ, ହାକୁଟି ନାଶ କରେ ଓ ଅଗ୍ନି ବୃଦ୍ଧି କରାଏ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ମୂଳ ଓ ମଞ୍ଜି |
| ମାତ୍ରା | ସ୍ୱରସ ୧୦-୨୦ ମି.ଲି, ମଞ୍ଜି ଚୂର୍ଣ୍ଣ ୧-୨ ଗ୍ରାମ୍, କ୍ୱାଥ ୫୦-୧୦୦ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. କଫକାଶ ହୋଇ ଗଳା ବସିଗଲେ : | ତୁଳସୀ ମୂଳକୁ ଚୂଷି କରି ସେବନ କରିବ । କଳା ତୁଳସୀ ସ୍ୱରସ ୧-୨ ଚାମଚ ସାମାନ୍ୟ ଗୋଲମରିଚ ସହିତ ମିଶାଇ ସେବନ କରିବ । |
| ୨. ଶ୍ୱାସ ଓ ବାରମ୍ବାର ହାକୁଟିରେ | ତୁଳସୀ ପତ୍ର ରସ ୧୦ ମି.ଲି. ମହୁ ସହିତ ମିଶାଇ ସେବନ କରିବ ଏବଂ ତୁଳସୀ ପତ୍ରକୁ କଳାଲୁଣ ସହିତ ଚୂଷି କରି ଖାଇବାକୁ ଦେବ । |

Digitized by srujanika@gmail.com

| | |
|---|---|
| ୩. ମେଲେରିଆ ଜ୍ୱର | ତୁଳସୀ ପତ୍ର କ୍ୱାଥ ୫୦ ମି.ଲି ପ୍ରତି ୩ ଘଣ୍ଟାରେ ଥରେ ଲେଖାଏଁ ୩ ଦିନ ପିଇବାକୁ ଦେବ । |
| ୪. ଥଣ୍ଡାଜ୍ୱର | ୨୦ ଟି ତୁଳସୀପତ୍ର ଓ ୧୦ ଟି ଗୋଲମରିଚ ମିଶାଇ କ୍ୱାଥ କରି ଦିନକୁ ୨ ଥର ପିଇବାକୁ ଦେବ । |
| ୫. ବାନ୍ତି | ପତ୍ର ସ୍ୱରସ ୧୦ ମି.ଲି. ମହୁ ସହିତ ମିଶାଇ ପିଇବାକୁ ଦେବ । |
| ୬. ସ୍ମରଣ ଶକ୍ତି ବୃଦ୍ଧି ପାଇଁ : | ପ୍ରତିଦିନ ୫-୧୦ ତୁଳସୀପତ୍ର ୧ ଗ୍ଲାସ ପାଣିରେ ପକାଇ ପିଇବ । ଏହି ପରି ୬ ମାସ କରିବ । |
| ୭. ଅଧ କପାଳି ମୁଣ୍ଡ ବ୍ୟଥା | ତୁଳସୀଚଟା ୨ ଗ୍ରାମ୍ ନେଇ ମହୁ ସହିତ ମିଶାଇ ସେବନ କରିବ ଓ ତୁଳସୀ ପତ୍ର ରସରେ କର୍ପୂର ମିଶାଇ ସ୍ଥାନିକ ଲେପ ଦେବ । |
| ୮. ମୁତ୍ରକୃଚ୍ଛ ଓ ପରିସ୍ରା ଜଳାପୋଡ଼ା | ତୁଳସୀ ମଞ୍ଜି ୬ ଗ୍ରାମ୍ ନେଇ ରାତ୍ରିରେ ୧୫୦ ମି.ଲି. ପାଣିରେ ବତୁରାଇ ସେଥିରେ ସାମାନ୍ୟ ମିଶ୍ରି ମିଶାଇ ପ୍ରତିଦିନ ୨-୩ ଥର ପିଇବ । |
| ୯. ଧାତୁ ଦୌର୍ବଲ୍ୟ | ଏହାର ମଞ୍ଜି ୨ ଗ୍ରାମ୍ ନେଇ ଗାଈ କ୍ଷୀର ସହିତ ବାଟି ପ୍ରତିଦିନ ସକାଳେ ଓ ରାତ୍ରିରେ ପିଇବ । ଏହିପରି ୩ ମାସ କରିବ । |
| ୧୦. ମୁଖବ୍ରଣ | ତୁଳସୀପତ୍ର ଓ କମଳାରସ ଏକତ୍ର ମିଶାଇ ରାତ୍ରିରେ ମୁହଁ ଧୋଇବା ପରେ ଲେପ କରିବ । |
| ୧୧. ଯାଦୁ | ଏହାର ପତ୍ରକୁ ଲୁଣ ସହିତ ମିଶାଇ ସ୍ଥାନିକ ଲେପ କରିବ । |

Digitized by srujanika@gmail.com

| | |
|---|---|
| ୧୨.କାନ ବିନ୍ଧା | ଏହାର ପତ୍ର ରସ ସାମାନ୍ୟ ଉଷୁମ କରି ୩-୪ ଟୋପା କାନରେ ପକାଇବ । |
| ୧୩.ଶରୀରର କ୍ଳାନ୍ତି ଲାଘବ ପାଇଁ | ୧୦-୧୫ ଟି ତୁଳସୀପତ୍ରକୁ ବାଟି ୧ ଗ୍ଲାସ ଉଷୁମ କ୍ଷୀରରେ ନିୟମିତ ପିଇବ । |
| ପ୍ରମୁଖ ଔଷଧ | ଦାର୍ବୀତୈଳ, ସୁରସାଦିଗଣ, କ୍ଷୁରାଦି କ୍ୱାଥ । |



Digitized by srujanika@gmail.com

# ଧୁ ଦୁ ରା

## DATURA STRAMONIUM (SOLANACEAE)

ସଂସ୍କୃତ ନାମ: କନକ, ଧତ୍ତୁର; ହିନ୍ଦୀ: ଧତୁର;

ଇଂରାଜୀ : Thorn apple.

| | |
|---|---|
| ଉପ୍ତିସ୍ଥଳ | ଓଡ଼ିଶାର ପ୍ରାୟ ଅଧିକାଂଶ ଅଞ୍ଚଳ ଓ ଦେବାଳୟ ଆଦି ସ୍ଥାନମାନଙ୍କରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହି ବନସ୍ପତିର ଉଚ୍ଚତା ୧-୧.୩ ମିଟର: ପତ୍ର :୧୫-୨୦ ସେ.ମି. ଲମ୍ବା, ଅଣ୍ଡାକାର ଆକୃତି, ଅଗ୍ରଭାଗ ଅସମାନ ଓ ସାମାନ୍ୟ ଦନ୍ତୁରିତ, ଉତ୍କଟ ଗନ୍ଧ ଯୁକ୍ତ । ଫୁଲ: ଲମ୍ବା ଓ ତୁରୀ ପରି, ଶ୍ୱେତ, କୃଷ୍ଣ ଓ ବାଇଗଣୀ ରଙ୍ଗଯୁକ୍ତ । ଗୋଟିଏ ଫୁଲରେ ଆଉ ଏକ ଫୁଲ ଥିବା ପରି ଜଣାଯାଏ । ଫଳ: ଗୋଲ, ଟାଣ ଓ ଉର୍ଦ୍ଧ୍ୱମୁଖ ଏବଂ କଣ୍ଟା ଦ୍ୱାରା ଆବୃତ୍ତ । ମଞ୍ଜି ଚେପ୍ଟା, ପକ୍ୱାବସ୍ଥାରେ ଫଳ ସ୍ୱୟଂ ଫାଟି ମଞ୍ଜି ବିଛେଇ ହୋଇ ଭୂମିରେ ପଡ଼ିଥାଏ । |
| ପ୍ରଧାନ ଗୁଣ କର୍ମ | ଏହାର ପତ୍ର,ମଞ୍ଜି- ବେଦନାହର, ଶୂଳଘ୍ନ, କାଶ, ଶ୍ୱାସ ହର ଓ ନିଦ୍ରାଜନକ ଅଟେ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ଫୁଲ,ମଞ୍ଜି ଓ ମୂଳ |
| ସତର୍କତା | ଏହି ବନସ୍ପତିର ପ୍ରୟୋଗ ଦ୍ୱାରା ଶରୀରରେ ବିଷାକ୍ତ କ୍ରୀୟା ସୃଷ୍ଟି ହେଉଥିବାରୁ ଏହାକୁ ଗୋମୂତ୍ର କିମ୍ବା ଗାଈ କ୍ଷୀରରେ ଭଲ ରୂପେ ସିଝାଇ ଗରମ ପାଣିରେ ଧୋଇ ଶୁଖାଇ ଔଷଧୀୟ ବ୍ୟବହାର କରାଯାଇଥାଏ । |
| ମାତ୍ରା | ଚୂର୍ଣ୍ଣ: ୫୦-୧୦୦ ମି.ଗ୍ରା |

Digitized by srujanika@gmail.com

## ଔଷଧୀୟ ବ୍ୟବହାର

| | |
|---|---|
| ୧. ତମକ ଶ୍ବାସ | ପତ୍ର ଚୂର୍ଣ୍ଣର ଧୂଆଁ ଶୁଙ୍ଘିବ । |
| ୨. ଅଣ୍ଡକୋଷଫୁଲା ଓ ଆଣ୍ଠୁଗଣ୍ଠି ଦରଜ | ଏହାର ପତ୍ରକୁ ସିଝାଇ ସେହି ପାଣିରେ ସେକ ଦେବ ଏବଂ ପତ୍ରକୁ ସୋରିଷ ତେଲରେ ଭାଜି ସେହି ସ୍ଥାନରେ ବାନ୍ଧିବ । |
| ୩. ବ୍ରଣ, ଶୋଥ, ଅର୍ଶ, ଓ ଭଗନ୍ଦର | ଏହାର ପତ୍ରକୁ ବାଟି ଉଷୁମ କରି ଲେପ କରିବ କିମ୍ବା ଏହାର ମୂଳକୁ ଗୋମୂତ୍ର ସହିତ ବାଟି ସ୍ଥାନିକ ଲେପ ଦେବ । |
| ୪. କାନବିନ୍ଧା | ଏହାର ପତ୍ର ରସକୁ ଗରମ କରି ୨-୪ ଟୋପା କାନରେ ପକାଇବ । |
| ୫. ବଥ ଘା'ରେ | ଏହାର ପତ୍ର ଉପରେ ଘିଅ ଲଗାଇ ଉଷୁମ କରି ଲେପ ଦେଲେ ବଥ ପାକ ହୋଇ ପୂୟ ନିଷ୍କାସନ ହୋଇଥାଏ । |
| ୬. ଗୃଧ୍ରସୀ (ସାଇଟିକା ବାତ): | ପତ୍ରକୁ ବାଟି ସାମାନ୍ୟ ଉଷୁମ କରି ପାଦତଳେ ବାନ୍ଧିବ । |
| ପ୍ରମୁଖ ଔଷଧି | କନକାସବ, କାମେଶ୍ବର ମୋଦକ, ଧତ୍ତୁରାଦ୍ୟତୈଳ । |



Digitized by srujanika@gmail.com

# ଦୁବ

## CYNODON DACTYLON (POACEAE)

ସଂସ୍କୃତ ନାମ: ଦୁର୍ବା, ଶତପର୍ବା; ହିନ୍ଦୀ: ଦୁବଘାସ;

ଇଂରାଜୀ : Canch Grass

| | |
|---|---|
| ଉତ୍ପତ୍ତିସ୍ଥଳ | ଓଡ଼ିଶାର ପ୍ରତ୍ୟେକ ପ୍ରାନ୍ତ, ବଣ, ଜଙ୍ଗଲ, ଚାଷଜମି, ପଡ଼ିଆ ଓ ବଗିଚା ଆଦି ସ୍ଥାନରେ ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହାକୁ ଦୁବ ଘାସ ରୂପେ ସମସ୍ତେ ଜାଣନ୍ତି । ଅତ୍ୟଧିକ ଖରା ଓ ପାଣି ଅଭାବରୁ ଏହା ଶୁଖି ଯାଇଥିଲେ ମଧ ପାଣି ସଂସ୍ପର୍ଶରେ ଆସିଲେ ପୁନର୍ଜିବିତ ହୋଇଥାଏ । କାଣ୍ଡରେ ଅନେକ ଗଣ୍ଠି ଥାଏ । ପ୍ରତ୍ୟେକ ଗଣ୍ଠିରୁ ମୂଳ ବାହାରି ଭୂଇଁ ସାଥିରେ ଲାଗି ରହେ ଏବଂ ଭୂମିରେ ଗାଲିଚା ପରି ବିଛାଇ ହୋଇ ରହିଥାଏ । କାଣ୍ଡ ଆଗେ ଆଗେ ପ୍ରସାରିତ ହୋଇଥାଏ ଏବଂ ପ୍ରତ୍ୟେକ ପବର ମୂଳ ଭୂଇଁ ସହିତ ବାନ୍ଧି ହୋଇ ନୂତନ ଡେର ସୃଷ୍ଟି କରେ । |
| ପ୍ରଧାନ ଗୁଣ କର୍ମ | ଶୀତଳ, ମୂତ୍ରଳ ଓ ବର୍ଣ୍ଣକାରକ । ଏହା ମୁଖ୍ୟତଃ ତୃଷା, ଦାହ, ରକ୍ତସ୍ରାବ, ରକ୍ତାର୍ଶ, ଚର୍ମରୋଗ ଓ ସଦ୍ୟବ୍ରଣ ଆଦିରେ ବ୍ୟବହୃତ ହୋଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ପଞ୍ଚାଙ୍ଗ |
| ମାତ୍ରା | ସ୍ୱରସ : ୧୦-୨୦ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ନାସାରୁ ରକ୍ତସ୍ରାବ | ୨/୪ ଟୋପା ଦୁବରସ ନାକରେ ପକାଇବ । |
| ୨. ଜ୍ୱରରେ ଅତ୍ୟଧିକ ଶିର ବ୍ୟଥା | ଦୁବରସକୁ ହାଲ୍କା ହାଲ୍କା ଶିରରେ ମାଲିସ କରିବ । |

Digitized by srujanika@gmail.com

| | |
|---|---|
| ୩. ବ୍ରଣ | ଦୁବଘାସର ମୂଳ ବାଟି ସ୍ଥାନିକ ଲେପ କରିବ । |
| ୪. ଆଖିଧରାରେ | ଦୁବରସ ୨ ଟୋପା ଆଖିରେ ପକାଇବ । |
| ୫. ରକ୍ତସ୍ରାବ ଜନ୍ୟ ସଦ୍ୟ ବ୍ରଣ | ଦୁବକୁ ବାଟି ସ୍ଥାନିକ ଲେପ କରିବ । |
| ୬. ଯାଦୁ ଓ ବିଚର୍ଚ୍ଚିକା | ଦୁବକୁ ହଳଦୀ ସହିତ ବାଟି ସ୍ଥାନିକ ଲେପ କରିବ । |
| ୭. ରକ୍ତପ୍ରଦର | ୧ ଚାମଚ ଦୁବରସରେ ୩ ଗ୍ରାମ୍ ରକ୍ତ ଚନ୍ଦନ ଚୂର୍ଣ୍ଣ ଓ ମିଶ୍ରି (୨ଗ୍ରାମ୍) ମିଶାଇ ୨୧ ଦିନ ପାନ କରିବ । |
| ୮. ଉଚ୍ଚ ରକ୍ତ ଚାପ | ନିୟମିତ ୨ ଚାମଚ ଦୁବରସ ଗାଈ କ୍ଷୀର ୧ ଗ୍ଲାସରେ ମିଶାଇ ପିଇବ । |
| ୯. ମୁଖ ବ୍ରଣ | ଦୁବଘାସକୁ ଚାଉଳଧୁଆ ପାଣିରେ ବାଟି ଲେପ କରିବ । |
| ୧୦. ଅନିୟମିତ ଋତୁସ୍ରାବ | ଦୁବ ଘାସକୁ ବାଟି ୫ ଗ୍ରାମ୍ ଲେଖାଏଁ ନିୟମିତ ୩ ମାସ ପର୍ଯ୍ୟନ୍ତ ସେବନ କରିବ । |
| ପ୍ରମୁଖ ଔଷଧି | ଦୁର୍ବାଦିକ୍ୱାଥ, ଦୁର୍ବାଦି ଘୃତ । |



Digitized by srujanika@gmail.com

# ଧନିଆଁ

## CORIANDRUM SATIVUM (APIACEAE)

ସଂସ୍କୃତ ନାମ: ଛତ୍ରା, ଧାନ୍ୟକ ; ହିନ୍ଦୀ: ଧନିଆଁ ;

ଇଂରାଜୀ: Coriander Fruit

**ଉତ୍ପତ୍ତି ସ୍ଥଳ** — ବାଡ଼ିବଗିଚା ଆଦିରେ ଚାଷ କାରାଯାଇଥାଏ ଏବଂ ଏହାର ପତ୍ର ପରିବା ଦୋକାନ ମାନଙ୍କରେ ବର୍ଷତମାମ ମିଳୁଥାଏ ।

**ବନସ୍ପତି ବର୍ଣ୍ଣନା** — ଏହା ୧-୨ ଫୁଟ ଉଚ୍ଚତା ବିଶିଷ୍ଟ ବନସ୍ପତି । ଶାଖା: ଚିକ୍କଣ ଓ କୋମଳ, ବହୁ ଶାଖାଯୁକ୍ତ । ପତ୍ର: ମୂଳ ପାଖରେ ଥିବା ପତ୍ର ଗୋଲାକାର, ଅଗ୍ରଭାଗ ସାମାନ୍ୟ ଦନ୍ତୁରିତ ଏବଂ ବନସ୍ପତିର ଅଗ୍ରଭାଗ ପତ୍ର ଖଣ୍ଡିତ ଓ ବିଷମ । ଫୁଲ: ଛତା ପରି, ଧଳା ବା ସାମାନ୍ୟ ଗୋଲାପ ରଙ୍ଗଯୁକ୍ତ । ଶୀତ ଋତୁ ଶେଷରେ ଫୁଲ ଫଳ ଆସେ । ଫଳ: ଛୋଟ ଛୋଟ, ଏଥିରେ ୮-୧୦ ରେଖା ଦେଖାଯାଏ । ଶୁଖିଗଲା ପରେ ଏହା ୨ ଫାଳ ହୋଇଯାଏ ।

**ପ୍ରଧାନ ଗୁଣ କର୍ମ** — ଉଷ୍ଣ, ମୂତ୍ରଳ, ଦୀପନ ଓ ପାଚନ । ଏହା ତୃଷ୍ଣା, ନେତ୍ରରୋଗ, ଜ୍ୱର, ବାନ୍ତି ଓ ଅତିସାର ଏବଂ ଶୂଳରେ ପ୍ରୟୋଗ କରାଯାଏ ।

**ଔଷଧୀୟ ଉପଯୋଗୀ ଅଂଶ** — କଞ୍ଚାପତ୍ର, ଶୁଖିଲାଫଳ ।

**ମାତ୍ରା** — ଚୂର୍ଣ୍ଣ ୩-୬ ଗ୍ରାମ୍ ।

## ଔଷଧୀୟ ବ୍ୟବହାର

**୧. ନବଜ୍ୱର** — ଧନିଆ ଓ ପୋଟଳ ପତ୍ର ୧୦ ଗ୍ରାମ୍ ଲେଖାଏଁ ନେଇ କ୍ୱାଥ ପ୍ରସ୍ତୁତ କରିବ । ଦିନକୁ ୩ ଥର ସେବନ କରିବାକୁ ଦେବ ।

Digitized by srujanika@gmail.com

୨. ଅତିସାର
ଧନିଆଁ ଚୂର୍ଣ୍ଣ ୩ ଗ୍ରାମ୍ ଓ କଳାଲୁଣ ୧ ଗ୍ରାମ୍ ମିଶାଇ ଖାଇବା ପରେ ସେବନ କରି ଥଣ୍ଡା ପାଣି କିମ୍ବା ଚହ୍ଲାଦହି ପିଇବ ।

୩. ଆମାତିସାର
(କ) ଧନିଆଁ ଓ ଶୁଣ୍ଠି ଥରକେ ପ୍ରତ୍ୟେକ ୫ ଗ୍ରାମ୍ ନେଇ କ୍ୱାଥ ପ୍ରସ୍ତୁତ କରି ଦିନକୁ ୩ ଥର ସେବନ କରିବ ।

(ଖ) ଧନିଆଁ (୫ ଗ୍ରାମ୍) କୁ ପାଣିରେ ବତୁରାଇ ସକାଳେ ପ୍ରତିଦିନ ପିଇବ ।

୪. ଆମବାତ
ଧନିଆଁ, ଶୁଣ୍ଠି ଓ ଚଢ଼ାମୂଳ ପ୍ରତ୍ୟେକ ୫ ଗ୍ରାମ୍ ଲେଖାଏଁ କ୍ୱାଥ ପ୍ରସ୍ତୁତ କରି ଦିନକୁ ୨ ଥର କରି ସେବନ କରିବ ।

୫. ପେଟ ଜଳା; ତୃଷା
୧୫ ଗ୍ରାମ୍ ଧନିଆଁକୁ ମାଟି ପାତ୍ରରେ ଅଧାଲିଟର ପାଣିରେ ରାତ୍ରିରେ ବତୁରାଇ ସେଥିରେ ୩୦ ଗ୍ରାମ୍ ମିଶ୍ରୀ ମିଶାଇ ଦିନକୁ ୩ ଥର ପିଇବ ।

୬. ଅମ୍ଳପିତ୍ତ
୨୦ ଗ୍ରାମ୍ ଧନିଆଁ କୁ ୪୦୦ ମି.ଲି. ପାଣିରେ ସିଝାଇ ଅବଶିଷ୍ଟ ୧୦୦ ମି.ଲି.କୁ ଥଣ୍ଡା କରି ସେଥିରେ ୧୦ ଗ୍ରାମ୍ ମହୁ ମିଶାଇ ଦିନକୁ ୨ ଥର କରି ୧୫ ଦିନ ସେବନ କରିବ ।

୭. ଭ୍ରମ
ଧନିଆଁ ଚୂର୍ଣ୍ଣ ୬ ଗ୍ରାମ୍ ଏବଂ ଅଁଳା ଚୂର୍ଣ୍ଣ ୬ ଗ୍ରାମକୁ ୨୫୦ ମି.ଲି. ପାଣିରେ ରାତିରେ ବତୁରାଇ ପ୍ରତ୍ୟହ ସକାଳେ ମକଚି ଛାଣିକରି ସେଥିରେ ମିଶ୍ରି ୩ ଗ୍ରାମ୍ ମିଶାଇ ପିଇବ ।

୮. ଅଗ୍ନିମାନ୍ଦ୍ୟ
କ) ପ୍ରତିଦିନ ସକାଳେ ଧନିଆଁପତ୍ର (କଞ୍ଚା) ସ୍ୱରସ ୧ ଚାମଚ ପିଇବ ।

ଖ) ଧନିଆଁ ୫୦ ଗ୍ରାମ୍, ଗୋଲମରିଚ ୨୦ ଗ୍ରାମ୍ ଓ ସୈନ୍ଧବଲୁଣ ୨୦ ଗ୍ରାମ୍ ନେଇ ଗୁଣ୍ଡ କରି ମିଶାଇ ଗୋଟିଏ ପାତ୍ରରେ ରଖି

Digitized by srujanika@gmail.com

| | | |
|---|---|---|
| | | ପ୍ରତିଦିନ ୧ ଚାମଚ ( ୩ ଗ୍ରାମ୍) ଲେଖାଏଁ ଖାଇବାପୂର୍ବରୁ ସେବନ କରିବ । |
| ୯. ଅନିଦ୍ରା | | ଧନିଆଁ ସ୍ୱରସ ୨ ଚାମଚରେ ମିଶ୍ରୀ ଗୁଣ୍ଡ ୧ ଚାମଚ ମିଶାଇ ସେବନ କରିବ । |
| ୧୦.କୃମି | : | ଧନିଆଁ ଚୂର୍ଣ୍ଣ ୩ ଗ୍ରାମକୁ ଆମ୍ବ ଆଚାର ସହିତ ପ୍ରତିଦିନ ସେବନ କରିବାକୁ ଦେବ । |
| ୧୧.ସ୍ୱପ୍ନଦୋଷ | : | ଏହାର ଚୂର୍ଣ୍ଣ ୫ ଗ୍ରାମ୍‌ରେ ମିଶ୍ରି ୫ ଗ୍ରାମ୍ ମିଶାଇ ନିୟମିତ ୧ ମାସ ସେବନ କରିବ । |
| ୧୨.ଶିରଶୂଳ | | କଞ୍ଚା ଧନିଆଁକୁ ବାଟି ଶିରରେ ଲେପ କରିବ । |
| ପ୍ରମୁଖ ଔଷଧି | | ଧାନ୍ୟକାଦିହିମ, ଧାନ୍ୟପଞ୍ଚକ କ୍ୱାଥ । |



Digitized by srujanika@gmail.com

# ଧନ୍ୱନ୍ତରୀ

## CYMBOPOGON MARTINI (POACEAE)

ସଂସ୍କୃତ ନାମ: ଭୂସ୍ତୃଣ, ରୋହିଷ; ହିନ୍ଦୀ: ହରିପତ୍ତି ;

ଇଂରାଜୀ : Rusa grass, Lemon grass

| | |
|---|---|
| ଉପ୍ତିସ୍ଥଳ | ଏହା ସ୍କୁଲ ପରିସର, ବାଡ଼ିବଗିଚା ଆଦିରେ ରୋପଣ କରାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ୧.୫ ରୁ ୨.୪ ମିଟର ଉଚ୍ଚତା ବିଶିଷ୍ଟ ବନସ୍ପତି । ପତ୍ର: ୨ ଫୁଟ ଲମ୍ବା, ଅଗ୍ରଭାଗ ମୁନିଆଁ, ଧାନଗଛ ପରି ପତ୍ର, ପତ୍ରକୁ ମକଚିଲେ ଲେମ୍ବୁପରି ଗନ୍ଧ ବାହାରେ, ମୂଳ: ସୁଗନ୍ଧଯୁକ୍ତ । |
| ପ୍ରଧାନ ଗୁଣ କର୍ମ | ଦୀପନ, ପାଚନ, ଅନୁଲୋମନ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ପତ୍ର । |
| ମାତ୍ରା | କ୍ୱାଥ: ୫୦-୧୦୦ ମି.ଲି., ତୈଳ: ୧-୩ ବୁନ୍ଦା । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ | ଏହାର କ୍ୱାଥ ୫୦ ମି.ଲି. ଦିନକୁ ୨-୩ ଥର ସେବନ କରିବ । |
| ୨. ସାଧାରଣ ଜ୍ୱର | ଏହାର ପଞ୍ଚାଙ୍ଗ କ୍ୱାଥ ୫୦ ମି.ଲି. ଦିନକୁ ୩ ଥର ପିଇବ । |
| ୩. କଟିବାତ, ଗଣ୍ଠିବାତ | ପତ୍ରକୁ ପାଣିରେ ସାମାନ୍ୟ ଫୁଟାଇ ୧୦୦ ମି.ଲି. ଦିନକୁ ୨ ଥର ପିଇବ । |
| ୪. ଆଳସ୍ୟ ଓ ଦୁର୍ବଳତା : | ପତ୍ରକୁ ବାଟି ସିଝାଇ ୫୦ ମି.ଲି. ଦିନକୁ ୨-୩ ଥର ପିଇବ । |

Digitized by srujanika@gmail.com

| | |
|---|---|
| ୫. କୋଷ୍ଠକାଠିନ୍ୟ | ଏହାର କ୍ୱାଥ ୫୦ ମି.ଲି. ରାତ୍ରିରେ ସେବନ କରିବ । |
| ପ୍ରମୁଖ ଔଷଧି | ବିଦାରିଘୃତ, ଆୟୁର୍ବେଦିକ୍ ଚା' । |



Digitized by srujanika@gmail.com

# ନାଗେଶ୍ୱର

## MESUA FERREA (CLUSIACEAE)

ସଂସ୍କୃତ ନାମ: ନାଗକେଶର; ହିନ୍ଦୀ: ନାଗକେଶର; ଇଂରାଜୀ: Mesua.

ଉପ୍ତତିସ୍ଥଳ : ଏହା ବିଶେଷତଃ ଦକ୍ଷିଣ ଭାରତ, ନେପାଳ, ପୂର୍ବହିମାଳୟ, ଆସାମ, ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ ଆଦି ସ୍ଥାନମାନଙ୍କରେ ଦେଖିବାକୁ ମିଳେ । ଓଡ଼ିଶାର ସମସ୍ତ ଜିଲ୍ଲାରେ ପ୍ରଚୁର ପରିମାଣରେ ଦେଖାଯାଏ, ବାଡ଼ି ବଗିଚା ଏବଂ ମନ୍ଦିର ପରିସରରେ ଅତି ଯତ୍ନରେ ରୋପଣ କରାଯାଇଥାଏ ।

ବନସ୍ପତି ବର୍ଣ୍ଣନା : ଏହା ଏକ ମଧ୍ୟମାକାର ବୃକ୍ଷ । ପତ୍ର: ୭.୫-୧୦ ସେ.ମି ଲମ୍ୱା ଓ ୨.୫-୩.୫ ସେ.ମି ଚଉଡ଼ା ଓ ଅଗ୍ରଭାଗ ମୁନିଆଁ । ଜାମୁକୋଳି ପତ୍ର ପରି ପତ୍ର । ଫୁଲ : ସୁଗନ୍ଧିତ । କେଶର: ସର୍ପଫଣା ପରି ହୋଇଥାଏ । ବସନ୍ତ ଋତୁ ପ୍ରାରମ୍ଭରେ ପୁଷ୍ପ ଆସିଥାଏ ।

ପ୍ରଧାନ ଗୁଣ କର୍ମ : ଉଷ୍ଣବୀର୍ଯ୍ୟ, ଆମପାଚକ, ଏହା ଜ୍ୱର, ତୃଷ୍ଣା, ଅତିସ୍ୱେଦ, ରକ୍ତାର୍ଶ, ରକ୍ତପିତ୍ତ, ବାନ୍ତି, ପ୍ରଦର ଓ ଅଣ୍ଡାଜ୍ୱରରେ ପ୍ରୟୋଗ କରାଯାଏ ।

ଔଷଧୀୟ ଉପଯୋଗୀ ଅଂଶ : ଫୁଲ (ଶୁଷ୍କ)

ମାତ୍ରା : ଚୂର୍ଣ୍ଣ: ୧-୩ ଗ୍ରାମ୍

## ଔଷଧୀୟ ବ୍ୟବହାର

୧. ରକ୍ତାର୍ଶ : ଲହୁଣି ଓ ମିଶ୍ରି ସହିତ ୨ ଟି ଫୁଲକୁ ବାଟି କରି ପ୍ରତିଦିନ ୨ ଥର ପିଇବାକୁ ଦେବ ।

୨. ପ୍ରଦର (ଶ୍ୱେତ) : ଏହାର ଫୁଲ ଚୂର୍ଣ୍ଣ (୩ଗ୍ରାମ୍) ଚହ୍ଲାଦହି ସହିତ ସେବନ କରିବାକୁ ଦେବ ।

Digitized by srujanika@gmail.com

୩. ଅତିସାର (ତରଳଝାଡ଼ା) : ଏହାର ଚୂର୍ଣ୍ଣକୁ ଘିଅରେ ରାତିରେ ବତୁରାଇ ସକାଳେ ୧ ଚାମଚ ସେବନ କରିବ ।

୪. ହାକୁଟି ନାଗକେଶର ଚୂର୍ଣ୍ଣ ୩ ଗ୍ରାମ୍‌ରେ ମିଶ୍ରୀଚୂର୍ଣ୍ଣ ୧ ଗ୍ରାମ୍ ଓ ମହୁ ୧/୨ ଚାମଚ ମିଶାଇ ସେବନ କରିବ ଓ ପରେ ଆଖୁରସ ପିଇବ ।

୫. ରକ୍ତପିତ୍ତ ଏହାର ଚୂର୍ଣ୍ଣ ୩ ଗ୍ରାମ୍‌କୁ ଦୁବରସ ୧ ଚାମଚ ସହିତ ଦିନକୁ ୨ ଥର ସେବନ କରିବ ।

୬. ଶୀତପିତ୍ତ ବା ଏଲର୍ଜି ନାଗକେଶର ଚୂର୍ଣ୍ଣ ୩ ଗ୍ରାମକୁ ମହୁ ସହିତ ଦିନକୁ ୨ ଥର ସେବନ କରିବ ।

୭. ହାତପାଦ ଜଳାପୋଡ଼ା : ଏହାର ଫୁଲକୁ ଚନ୍ଦନ ସହିତ ବାଟି ଲେପ କରିବ ।

୮. ଅର୍ଶ ନାଗକେଶରକୁ ବାଟି ଲହୁଣି ମିଶାଇ ଝାଡ଼ାଯିବା ପରେ ସ୍ଥାନିକ ଲେପ କରିବ ।

୯. ରକ୍ତପ୍ରଦର ୩ ଗ୍ରାମ୍ ନାଗେଶ୍ୱର ଫୁଲକୁ ଚାଉଳଧୂଆ ପାଣି ୧ କପ୍ ସହିତ ସେବନ କରିବ ।

ପ୍ରମୁଖ ଔଷଧ ଆଦ୍ରକଖଣ୍ଡ, ପିପ୍ପଲ୍ୟାଦିଚୂର୍ଣ୍ଣ, ସମଶର୍କରା ଚୂର୍ଣ୍ଣ



Digitized by srujanika@gmail.com

# ନିମ୍ବ/ଲିମ୍ବ

AZADIRACHTA INDICA (MELIACEAE)

ସଂସ୍କୃତ ନାମ: ନିମ୍ବ, ପିଚୁମର୍ଦ୍ଦ ; ହିନ୍ଦୀ: ନୀମ୍ ;

ଇଂରାଜୀ: Margosa Tree

| | |
|---|---|
| ଉପ୍ତିସ୍ଥଳ | ଏହା ଓଡ଼ିଶାର ସର୍ବତ୍ର ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହି ବୃକ୍ଷର ଉଚ୍ଚତା ୪୦-୫୦ ଫୁଟ । ଅନେକ ଶାଖା ପ୍ରଶାଖାଯୁକ୍ତ । ଛାଲି: ଖଦଡ଼ିଆ ଓ ମୋଟା, ଭିତରପାଖ ଲାଲ୍ । ଏଥିରୁ ଏକ ପ୍ରକାର ସ୍ୱଚ୍ଛ ରସ ନିର୍ଗତ ହୁଏ । ଫୁଲ: ଛୋଟ ଛୋଟ, ଗୁଚ୍ଛାକାର, ଧଳାରଙ୍ଗ ଓ ସୁଗନ୍ଧଯୁକ୍ତ । ବସନ୍ତ ଋତୁରେ ଆସେ । ଫଳ: ସାମାନ୍ୟ ଲମ୍ବା ଓ ଗୋଲ୍, ପକ୍ୱାବସ୍ଥାରେ ହଳଦିଆ ରଙ୍ଗ ହୋଇଥାଏ । ଏଥିରେ ଗୋଟିଏ ମଞ୍ଜି ଥାଏ । ଫଳରୁ ତୈଳ ବାହାର୍ କରାଯାଏ । |
| ପ୍ରଧାନ ଗୁଣ କର୍ମ | ତିକ୍ତ ରସ, ଶୀତବୀର୍ଯ୍ୟ, ଏହା ଜ୍ୱର, କୃମି, ବ୍ରଣ, ଚର୍ମରୋଗ ଓ ପ୍ରମେହରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ପୁଷ୍ପ, ଛାଲି,ଫଳ ଓ ତେଲ |
| ମାତ୍ରା | ପତ୍ର ସ୍ୱରସ: ୧୦-୨୦ ମି.ଲି.<br>ଛାଲି ଚୂର୍ଣ୍ଣ: ୨-୪ ଗ୍ରାମ୍,<br>ତୈଳ: ୫-୧୦ ବିନ୍ଦୁ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଚର୍ମରୋଗ | ହରିଦ୍ରାଚୂର୍ଣ୍ଣ ୨ ଗ୍ରାମ୍ ସହିତ ନିମ୍ବଚୂର୍ଣ୍ଣ ୨ ଗ୍ରାମ୍ ଏକତ୍ର ମିଶାଇ ଉଷୁମପାଣି ଅନୁପାନରେ ଦିନକୁ ୨ ଥର ୧ ମାସ ସେବନ କରିବ । |

Digitized by srujanika@gmail.com

୨. ଜ୍ୱର (ବାତଶ୍ଳେଷ୍ମା) : ନିମ୍ବପତ୍ର ୫ ଟି, ଗୋଲମରିଚ ୫ ଟି ଓ ତୁଳସୀପତ୍ର ୫ ଟି ପ୍ରତିଦିନ ଏକାଠି କରି ବାଟି ଦିନକୁ ୩ ଥର ପିଇବ ।

୩. ପ୍ରମେହ — ଏହାର ଛାଲି ୧୦ ଗ୍ରାମକୁ କ୍ୱାଥପରି ସିଝାଇ ପ୍ରତିଦିନ ୨ ଥର ଖାଦ୍ୟ ଖାଇବା ଆଗରୁ ପିଇବ ।

୪. ମଧୁମେହ — କ) ନିମ୍ବପତ୍ର ସ୍ୱରସ ୨ ମି.ଲି. ସହିତ ବେଲପତ୍ର ସ୍ୱରସ ୨ ମି.ଲି. ମିଶାଇ ପ୍ରତିଦିନ ସକାଳେ ସେବନ କରିବ ।

ଖ) ନିମ୍ବଛାଲି ୧୦ ଗ୍ରାମ୍ ଏବଂ ମେଥି ୧୦ ଗ୍ରାମ୍ ଏକତ୍ର ନେଇ କ୍ୱାଥ ପ୍ରସ୍ତୁତ କରି ପ୍ରତିଦିନ ଦିନକୁ ୨ ଥର ଖାଦ୍ୟ ଆଗରୁ ପିଇବ ।

୫. କାମଳା — ଏହାର ପତ୍ର ରସ ୧ ଚାମଚରେ ସାମାନ୍ୟ ମହୁ ମିଶାଇ ୩ ମାସ ସେବନ କରିବ ।

୬. ସୂତ୍ରକୃମି — କୋମଳ ପତ୍ର ସ୍ୱରସ ୧ ଚାମଚରେ ଅଧା ଚାମଚ ମହୁ ମିଶାଇ ୭ ଦିନ ସେବନ କରିବ ।

୭. ଶ୍ୱିତ୍ର (ଧଳାଛଉ) — ନିମ୍ବପତ୍ର, ଫୁଲ ଏବଂ ଫଳ ସମାନ ଭାଗ ନେଇ ବାଟି ୨ ଗ୍ରାମ୍ ପ୍ରତିଦିନ ସେବନ କରିବ ଏବଂ ଧୀରେ ଧୀରେ ବଢ଼ାଇ ୧୮ ଗ୍ରାମ୍ ପର୍ଯ୍ୟନ୍ତ ୪୦ ଦିନରେ ସେବନ କରିବ ।

୮. ବ୍ରଣ — ନିମ୍ବପତ୍ରକୁ ବାଟି ସ୍ଥାନିକ ଲେପ କରିବ ।

୯. ଯାଦୁ — ନିମ୍ବପତ୍ରକୁ ଦହିରେ ମିଶାଇ ସ୍ଥାନିକ ଲେପ କରିବ ।

୧୦. ଦନ୍ତରୋଗ — ନିମ୍ବପତ୍ରର ପାଉଁଶକୁ ପ୍ରତିଦିନ ଦାନ୍ତରେ ଘଷିଲେ ଦନ୍ତରୋଗ ଦୂର ହୁଏ ।

ପ୍ରମୁଖ ଔଷଧ — ନିମ୍ବାଦିଚୂର୍ଣ୍ଣ, ସୁଦର୍ଶନ ଚୂର୍ଣ୍ଣ, ନିମ୍ବାଦିଘୃତ, ଭଦ୍ରମୁସ୍ତାଦି କ୍ୱାଥ, ନିମ୍ବାରିଷ୍ଟ, ନିମ୍ବହରିଦ୍ରାଖଣ୍ଡ ।



Digitized by srujanika@gmail.com

# ପସାରୁଣୀ

## PAEDERIA FOETIDA (RUBIACEAE)

ସଂସ୍କୃତ ନାମ: ଗଂଧପ୍ରସାରଣୀ, ପ୍ରସାରଣୀ; ହିନ୍ଦୀ: ପସରନ ;

ଇଂରାଜୀ: Chinese moon creeper.

| | |
|---|---|
| ଉପ୍ତତ୍ତିସ୍ଥଳ | ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ବହୁଳ ପରିମାଣରେ ଦେଖାଯାଏ । କେତେକ ଏହାର ପତ୍ରକୁ ଶାଗ ପରି ଖାଇଥାନ୍ତି । |
| ବନସ୍ପତି ବର୍ଣ୍ଣନା | ଏହା ଏକ ଲତା ଜାତୀୟ ବନସ୍ପତି ଓ ଉତ୍କଟ ଦୁର୍ଗନ୍ଧଯୁକ୍ତ । ଏହାର କାଣ୍ଡ: ପତଳା, ଲମ୍ବା ଓ ଶକ୍ତ ହୋଇଥାଏ । ପତ୍ର: ୨''-୬'' ଲମ୍ବା ଓ ୧''-୨'' ଚଉଡ଼ା, ଅଗ୍ରଭାଗ ମୁନିଆଁ । ଫୁଲ: ବାଇଗଣି ରଙ୍ଗ, ଗୁଚ୍ଛାକାର, ଫଳ: ଚେପ୍‌ଟା, ଚିକ୍କଣ ଓ ପଞ୍ଚରେଖାଯୁକ୍ତ ପ୍ରତିଫଳରେ ଗୋଟିଏ ମଞ୍ଜି ଥାଏ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ, ବାତକଫ ଶାମକ ଓ ବଳକାରକ ଅଟେ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ପତ୍ର ଓ ସଂପୂର୍ଣ୍ଣ ଲତା । |
| ମାତ୍ରା | ସ୍ୱରସ: ୧୦-୨୦ ମି.ଲି., କ୍ୱାଥ: ୫୦-୧୦୦ ମି.ଲି. । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ଆମବାତ; ଗୃଧ୍ରସୀବାତ : | ଏହାର ପତ୍ର ରସ ୧୦ ମି.ଲି., ରସୁଣ ରସ ୫ ମି.ଲି. ଓ ୧ ଚାମଚ ମହୁ ଏକତ୍ର ମିଶାଇ ଦିନକୁ ୨ ଥର ୨୧ ଦିନ ସେବନ କରିବ । |
| ୨. ହାତଗୋଡ଼ ଝିମ୍ ଝିମ୍ ହେଲେ | ଏହାର ପତ୍ରକୁ କ୍ୱାଥ ପ୍ରସ୍ତୁତ କରି ଜଡ଼ାତେଲରେ ସିଝାଇ ସ୍ଥାନିକ ମାଲିସ କରିବ । |
| ୩. ପେଟଫାମ୍ପିଲେ | ପତ୍ରର କ୍ୱାଥ ୫୦ ମି.ଲି. ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

| | | |
|---|---|---|
| ୪. | ବ୍ରଣଶୋଥ ବା ଅଘାତଲାଗି : ଶରୀରର କୌଣସି ସ୍ଥାନ ଫୁଲିଗଲେ ଓ ବେଦନା ହେଲେ | ଏହି ପତ୍ରକୁ ଛେଚି ଗରମ କରି ଉଷ୍ମ ଅବସ୍ଥାରେ ସ୍ଥାନିକ ଲେପ କରିବ । |
| ୫. | ଆମାଜୀର୍ଣ୍ଣ | ଏହି ପତ୍ର ଶାଗ ପରି ସେବନ କରିବ । |
| | ପ୍ରମୁଖ ଔଷଧି | ପ୍ରସାରଣୀ ତୈଳ, ପ୍ରସାରଣୀ ଲେହ । |

❋ ❋ ❋

Digitized by srujanika@gmail.com

# ପାତାଳଗରୁଡ଼

## RAUWOLFIA SERPENTINA (APOCYNACEAE)

ସଂସ୍କୃତ ନାମ: ସର୍ପଗନ୍ଧା;   ହିନ୍ଦୀ: ଧବଳ ବରୁଆ,ଛୋଟାଚାନ୍ଦ ;

ଇଂରାଜୀ: Serpentina

| | |
|---|---|
| ଉପ୍ତିସ୍ଥଳ | ବାଡ଼ି,ବଗିଚା, ରାସ୍ତାକଡ଼ ଆଦି ସ୍ଥାନ ମାନଙ୍କରେ ସ୍ୱୟଂ ହୋଇଥାଏ ଏବଂ ଚାଷ କରାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ୧-୨ ଫୁଟ ଉଚ୍ଚତା ବିଶିଷ୍ଟ ବନସ୍ପତି ଅଟେ । ଫୁଲ : ଲାଲ୍ ରଙ୍ଗ, ଫଳ : ମଟର ପରି, ପାଚିଲା ଅବସ୍ଥାରେ ଲାଲ୍ ଓ ପରେ କଳାରଙ୍ଗ । ମୂଳ : ଅଙ୍ଗୁଳି ପରି ମୋଟା, ମାଟିର ବହୁତ ଗଭୀରକୁ ଯାଇଥାଏ । |
| ପ୍ରଧାନ ଗୁଣ କର୍ମ | ତିକ୍ତ, ପୌଷ୍ଟିକ, ନିଦ୍ରାକର, ଗର୍ଭାଶୟ ଉତ୍ତେଜକ ଏବଂ ଉଚ୍ଚ ରକ୍ତଚାପରେ ପ୍ରୟୋଗ କରାଯାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ । |
| ମାତ୍ରା | ୧ - ୬ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ନିଦ୍ରାନାଶ | ମୂଳଚୂର୍ଣ୍ଣ ୫ ଗ୍ରାମ୍କୁ ରାତ୍ରି ଶୋଇବା ବେଳେ ସେବନ କରିବ । |
| ୨. ଉଚ୍ଚରକ୍ତଚାପ | ଏହାର ମୂଳଚୂର୍ଣ୍ଣ ୨ ଗ୍ରାମ୍ କ୍ଷୀର ସହିତ ସକାଳେ ଓ ରାତ୍ରିରେ ସେବନ କରିବ । |
| ୩. ମାନସିକ ବିକୃତି | ଏହାର ମୂଳଚୂର୍ଣ୍ଣ ୩ ଗ୍ରାମ୍ କ୍ଷୀର ସହିତ ସକାଳେ ଓ ରାତ୍ରିରେ ନିୟମିତ ସେବନ କରିବ । |

Digitized by srujanika@gmail.com

୪. ପ୍ରଳାପ କରୁଥିବା ବ୍ୟକ୍ତି: ସର୍ପଗନ୍ଧା ଚୂର୍ଣ୍ଣ (୫ ଗ୍ରାମ୍) ମହୁ ସହିତ ଦିନକୁ ୨ ଥର ସେବନ କରିବ ।

ପ୍ରମୁଖ ଔଷଧି: ସର୍ପଗନ୍ଧାଦି ଚୂର୍ଣ୍ଣ, ସର୍ପଗନ୍ଧାଯୋଗ, ସର୍ପଗନ୍ଧାଘନବଟୀ, ସର୍ପଗନ୍ଧାରିଷ୍ଟ, ସର୍ପସିନ୍ଦୁର ଓ ସର୍ପଗନ୍ଧାତୈଳ ।

❋ ❋ ❋

Digitized by srujanika@gmail.com

# ପିଆଜ

## ALLIUM CEPA (LILIACEAE)

ସଂସ୍କୃତ ନାମ: ପଳାଣ୍ଡୁ, ମୁଖଦୂଷକ ; ହିନ୍ଦୀ: ପ୍ୟାଜ ;

ଇଂରାଜୀ: Bulb Onion

| | |
|---|---|
| ଉପ୍ତିସ୍ଥଳ | ବାଡ଼ିବଗିଚାରେ ଏବଂ ଜମିରେ ଚାଷ କରାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ୦.୫ ରୁ ୩ ଫୁଟ ପର୍ଯ୍ୟନ୍ତ ଉଚ୍ଚତା ବିଶିଷ୍ଟ ବନସ୍ପତି । ପତ୍ର: ଲମ୍ବା, ମାଂସଳ, ଭିତରପାଖ ଫମ୍ପା ଓ ଅଗ୍ରଭାଗ ମୁନିଆଁ । ପୁଷ୍ପଦଣ୍ଡ: ପତ୍ର ମଧ୍ୟରୁ ଏହା ସିଧା ବାହାରେ । ଅଗ୍ରଭାଗରେ ଗୋଲଗୋଲ ଧଳାରଙ୍ଗର ଛତାପରି ଫୁଲ ଦେଖାଯାଏ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ, ଦୀପନ, ପାଚନ । ଏହା ବାତରୋଗ, ବିସୂଚିକା, ଅଂଶୁଘାତ ଓ ରକ୍ତଦୋଷ ଆଦିରେ ବ୍ୟବହୃତ ହୁଏ । |
| ଔଷଧୀୟ ଉପଯୋଗୀ ଅଂଶ | କନ୍ଦ |
| ମାତ୍ରା | କନ୍ଦ ରସ : ୧୦-୩୦ ମି.ଲି. |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ତରଳଝାଡ଼ା | ପିଆଜ ରସ ୧ ଚାମଚରେ ପୋଦିନା ରସ ୧ ଚାମଚ ଓ ସାମାନ୍ୟ ଲୁଣ ମିଶାଇ ବାରମ୍ବାର ସେବନ କରିବ । |
| ୨. ଧାତୁଦୋଷ ଓ ଧ୍ୱଜଭଙ୍ଗ : | ୨ ଚାମଚ ପିଆଜ ରସରେ ୧ ଚାମଚ ମହୁ ଓ ଅଧା ଚାମଚ ଘିଅ ମିଶାଇ ସକାଳ ସଂଧ୍ୟା ସେବନ କରିବ । |
| ୩. ଅଂଶୁଘାତ | ୧ ଚାମଚ ରସରେ ଅଧା ଚାମଚ ମିଶ୍ରି ମିଶାଇ ସେବନ କରିବ । |

Digitized by srujanika@gmail.com

| | | |
|---|---|---|
| ୪. ମୁଖବ୍ରଣ ଓ ଦାଗ | : | ପ୍ରତିଦିନ ୨ ଟି ପିଆଜ ଆହାର ସହିତ ସେବନ କରିବ । |
| ୫. ଉଚ୍ଚରକ୍ତଚାପ | : | ପିଆଜରସ ୧ ଚାମଚରେ ୧ ଚାମଚ ମହୁ ମିଶାଇ ଦିନକୁ ୨-୩ ଥର କରି ନିୟମିତ ସକାଳ ଓ ସଂଧ୍ୟାରେ ସେବନ କରିବ । |
| ୬. କାସଶ୍ବାସ | | ପିଆଜରସ ୨ ଚାମଚରେ ୧ ଚାମଚ ମହୁ ମିଶାଇ ସେବନ କଲେ କଫ ବାହାରି ଯାଇ କାସଶ୍ବାସରେ ଆରାମ ମିଳିବ । |
| ୭. ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ | | ଗୋଟିଏ ପିଆଜକୁ କାଟି ସେଥିରେ ଲେମ୍ବୁରସ ପକାଇ ସେବନ କରିବ । |
| ୮. ମୂତ୍ରାଜଡା | | ୧ ଲିଟର ପାଣିରେ ୧୫ ଗ୍ରାମ୍ ଖଣ୍ଡ ଖଣ୍ଡ ପିଆଜ ପକାଇ ଗରମ କରି ଛାଣି ପିଇଲେ ପରିସ୍ରା ଜଳାପୋଡ଼ା ଓ ପରିସ୍ରାକଷ୍ଟ ଦୂର ହୁଏ । |
| ୯. ମୂତ୍ରାଶ୍ମରୀ | | ପିଆଜ ରସ ୧ ଚାମଚମରେ ୩ ଚାମଚ ଚିନି ପକାଇ ସରବତ କରି ଦିନକୁ ୩-୪ ଥର ପିଇବ। |
| ୧୦. କଷ୍ଟାର୍ତ୍ତବ | | ୬୦ ଗ୍ରାମ୍ ପିଆଜକୁ ଦରକୁଟା କରି ୧ ଲିଟର ପାଣିରେ ସିଝାଇ ଅବଶେଷ ୧/୪ ଅଂଶ ପାଣିରେ ୩୦ ଗ୍ରାମ୍ ଗୁଡ଼ ମିଶାଇ ଉଷୁମ ଅବସ୍ଥାରେ ପିଇବାକୁ ଦେଲେ ମାସିକ ଧର୍ମସ୍ରାବ ନିୟମିତ ହୋଇଥାଏ । |
| ୧୧. କର୍ଣ୍ଣଶୂଳ | | ପିଆଜ ରସକୁ ସାମାନ୍ୟ ଗରମ କରି କାନରେ ବିନ୍ଦୁବିନ୍ଦୁ (୫-୭) କରି ନିୟମିତ ପକାଇବ । |
| ୧୨. ଇନ୍ଦ୍ରଲୁପ୍ତ (ବାଳଝଡ଼ି ବନ୍ଦ ହୋଇଯାଇଥିଲେ) | | ଏହାକୁ ବାଟି ମହୁ ସହିତ ମୁଣ୍ଡରେ ଆସ୍ତେ ଆସ୍ତେ ଘଷିବ । |

Digitized by srujanika@gmail.com

୧୩.ନାସାଗତ ରକ୍ତସ୍ରାବ

ପିଆଜ ରସ ୨-୩ ବିନ୍ଦୁ ନାକରେ ପକାଇବେ ।

୧୪.ଅନିଦ୍ରା

ମାଂସରସ, ଡ଼ାଲି, ତରକାରୀ ଆଦି ଖାଦ୍ୟ ପଦାର୍ଥ ସହିତ ୨ ଟି ପିଆଜ ମିଶାଇ ପ୍ରତିଦିନ ସେବନ କଲେ ଉତ୍ତମ ନିଦ୍ରା ଆସିଥାଏ ।



Digitized by srujanika@gmail.com

# ପିଜୁଳି

**PSIDIUM GUAJAVA (MYRTACEAE)**

ସଂସ୍କୃତ ନାମ: ଆମରୁଦ, ପେରୁକ ; ହିନ୍ଦୀ: ଅମ୍ରଦ;

ଇଂରାଜୀ: Common Guava

| | |
|---|---|
| ଉପ୍ତିସ୍ଥଳ | ଓଡ଼ିଶାର ପୁରପଲ୍ଲୀ, ବାଡ଼ିବଗିଚା ଆଦିରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହି ବୃକ୍ଷର ଉଚ୍ଚତା ୨୦-୨୫ ଫୁଟ । ଛାଲି: ଚିକ୍କଣ, ଧୂସର ରଙ୍ଗଯୁକ୍ତ ଏବଂ ଅତି ପତଳା, ପତ୍ର: କର୍କଶ, ସୁଗନ୍ଧଯୁକ୍ତ, ଫୁଲ: ପ୍ରତି ପୁଷ୍ପଦଣ୍ଡରେ ଗୁଚ୍ଛାକାରରେ ୧-୩ ଛୋଟ ଛୋଟ ଧଳାରଙ୍ଗର ହୋଇଥାଏ । ଫଳ: ସବୁଜରଙ୍ଗ, ପକ୍ୱାବସ୍ଥାରେ ହଳଦିଆ ବା ଲାଲ୍ । ଗୋଲାକାର ଏବଂ ବିଭିନ୍ନ ଆକୃତିର ହୁଏ । ୩-୪ ବର୍ଷ ଗଛରେ ଫଳ ଆସିଥାଏ । ବିଶେଷତଃ ବର୍ଷା ଓ ଶୀତଋତୁରେ ଫଳ ଅଧିକ ଆସେ । ମଞ୍ଜି: ପ୍ରତି ଫଳରେ ଅନେକ ଛୋଟ ଛୋଟ ମଞ୍ଜି ଥାଏ । |
| ପ୍ରଧାନ ଗୁଣ କର୍ମ | ଏହାର ଫଳ ବଳକାରକ, ଶୀତବୀର୍ଯ୍ୟ, ମୃଦୁରେଚକ ଓ ବାତପିତ୍ତଶାମକ, ପତ୍ର : ଅତିସାର ନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | ଫଳ ଓ ପତ୍ର |
| ମାତ୍ରା | କ୍ୱାଥ: ୪୦ ରୁ ୮୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. କାଶ | ଗୋଟିଏ ପିଜୁଳିକୁ ଗରମ ବାଲିରେ ଭାଜି ଦିନକୁ ୨ ଥର ସାମାନ୍ୟ ଲୁଣ ମିଶାଇ ସେବନ କରିବ । |

Digitized by srujanika@gmail.com

| | |
|---|---|
| ୨. ମୁଖପାକ(ତୁଣ୍ଡ ଘା') | ପତ୍ର ସ୍ୱରସ ୧ ଚାମଚ ସାମାନ୍ୟ ଲାଲ୍‌ଖଇର ଗୁଣ୍ଡ ସହିତ ଦିନକୁ ୨-୩ ଥର ମୁଖରେ ଲଗାଇବ । |
| ୩. ଅତ୍ୟଧିକ ଭାଙ୍ଗ ନିଶା ଓ ଦୁଦୁରା ବିଷରେ | ଏହାର ପତ୍ର ରସ ୪ ଚାମଚ ପ୍ରତି ୧୫ ମିନିଟ୍ ବ୍ୟବଧାନରେ ୪-୫ ଥର ପିଇବାକୁ ଦେବ । ଅଥବା, ଫଳ ଖାଇବାକୁ ଦେବ । |
| ୪. ତରଳ ଝାଡ଼ାରେ | ପ୍ରାରମ୍ଭିକ ଅବସ୍ଥାରେ ଏହାର ଛାଲିକ୍ୱାଥ କିମ୍ବା ପତ୍ର କ୍ୱାଥ ୧ କପ୍ ମାତ୍ରାରେ ବାରମ୍ବାର ସେବନ କରିବ । |
| ୫. ଅଜୀର୍ଣ୍ଣ | ପିଚୁ଼ଳିର ତାଜା ପତ୍ରର ୧୦-୧୫ ମି.ଲି. ରସରେ ସାମାନ୍ୟ ଚିନି ମିଶାଇ ସେବନ କରିବ । |
| ୬. ମଧୁମେହଜନିତ ତୃଷା : | ଏହି ଫଳକୁ ଛୋଟ ଛୋଟ ଖଣ୍ଡ କରି ପାଣିରେ ପକାଇବ ଏବଂ ପରେ ସେହି ପାଣିକୁ ଛାଣିକରି ବାରମ୍ବାର ପିଇବ । |
| ୭. ରକ୍ତଦୋଷ ଓ ଚର୍ମରୋଗ: | ପ୍ରତିଦିନ ମଧ୍ୟାହ୍ନରେ ୨୫୦ ଗ୍ରାମ୍ ପିଚୁ଼ଳିଫଳ ୪ ସପ୍ତାହ ପର୍ଯ୍ୟନ୍ତ ସେବନ କରିବ । |
| ୮. ବଳବୀର୍ଯ୍ୟ ବୃଦ୍ଧି | ପରିପକ୍ୱ ୨ ଟି ପିଚୁ଼ଳିକୁ ଛେଚି ସେଥିରେ କ୍ଷୀର ମିଶାଇ ଛାଣି ଦେଲାପରେ (ମଞ୍ଜି ବାହାରିଗଲାପରେ) ସେଥିରେ ସାମାନ୍ୟ ମିଶ୍ରୀ ବା ଚିନି ମିଶାଇ ନିୟମିତ ୩ ମାସ ସେବନ କରିବ । |
| ୯. ଦନ୍ତବିନ୍ଧା | ଏହାର ୨-୩ ଟି ପତ୍ରକୁ ନିୟମିତ ଚୋବାଇବ ଏବଂ ଏହାର ପତ୍ର ସିଝାପାଣିରେ ଫିଟିକିରି ମିଶାଇ ନିୟମିତ ୨ ଥର କୁଳା କରିବ । |
| ୧୦.ଅଧକପାଳି ମୁଣ୍ଡବ୍ୟଥା | ନିୟମିତ ସୂର୍ଯ୍ୟୋଦୟ ପୂର୍ବରୁ କଞ୍ଚାପିଚୁ଼ଳିକୁ ଘସି କପାଳରେ ଲେପ କରିବ । |

Digitized by srujanika@gmail.com

୧୧.ଗୁଦଭ୍ରଂଶ : ଏହାର ଛାଲି କ୍ୱାଥରେ ମଳଦ୍ୱାର ସଫା କରିବ ।

୧୨.ଦୂଷିତ ବ୍ରଣ ମୂଳଛାଲି କ୍ୱାଥରେ ବ୍ରଣ ପ୍ରକ୍ଷାଳନ କରିବ ।

❋❋❋

Digitized by srujanika@gmail.com

# ପିପ୍ପଳୀ

## PIPER LONGUM (PIPERACEAE)

ସଂସ୍କୃତ ନାମ: କୃଷ୍ଣା, ପିପ୍ପଳୀ, ମାଗଧୀ; ହିନ୍ଦୀ: ପୀପଲ ;

ଇଂରାଜୀ: Long Pepper

ଉତ୍ପତ୍ତିସ୍ଥଳ — ଏହା ବିଶେଷତଃ ପାହାଡ଼ିଆ ସ୍ଥାନ ଓ ଜଙ୍ଗଲରେ ହୋଇଥାଏ ଏବଂ ବନସ୍ପତି ବାଟିକାମାନଙ୍କରେ ରୋପଣ କରାଯାଇଥାଏ ।

ବନସ୍ପତି ବର୍ଣ୍ଣନା — ଏହା ଏକ ଲତାଜାତୀୟ ବନସ୍ପତି । ଏହା ଭୂଇଁ ଉପରେ ବା ଅନ୍ୟ ଏକ ବୃକ୍ଷ ଉପରେ ଆଶ୍ରୟ ନେଇ ବଢ଼େ । କାଣ୍ଡ: ପତଳା । ପତ୍ର: ପାନପତ୍ର ପରି, ଫଳ: ଗୁଚ୍ଛାକାର, ସାମାନ୍ୟ ଲମ୍ୱା ଏବଂ ଶୁଖିଗଲାପରେ କୃଷ୍ଣାଭ ଧୂସରବର୍ଣ୍ଣ ହୋଇଥାଏ ।

ପ୍ରଧାନ ଗୁଣ କର୍ମ — ଦୀପନ, ପାଚନ, ଉଷ୍ଣ, ବାତଘ୍ନ, କଫନାଶକ ଏବଂ ରସାୟନ, ଏହାର ପ୍ରୟୋଗ ଅପଚନ, ଅଗ୍ନିମାନ୍ଦ୍ୟ, କାଶ, ଶ୍ୱାସ, ଜୀର୍ଣ୍ଣଜ୍ୱର, ଆମବାତ ଓ କଟୀବ୍ୟଥା ଆଦିରେ କରାଯାଏ ।

ଔଷଧୀୟ ଉପଯୋଗୀ ଅଂଶ — ଫଳ ଓ ମୂଳ

ମାତ୍ରା — ଫଳଚୂର୍ଣ୍ଣ - ୫୦୦ ମି.ଗ୍ରା.- ୧.୫ ଗ୍ରାମ୍ ମୂଳ (ପିପ୍ପଳୀମୂଳ)ଚୂର୍ଣ୍ଣ ୫୦୦ ମି.ଗ୍ରା - ୨ ଗ୍ରାମ୍ ।

## ଔଷଧୀୟ ବ୍ୟବହାର

୧. ଜ୍ୱର — ପିପ୍ପଳୀକୁ ୭ ଥର ତୁଳସୀରସରେ ଏବଂ ୭ ଥର ଗୋମୂତ୍ରରେ ବୁଡ଼ାଇ ରଖିବା ପରେ

Digitized by srujanika@gmail.com

ଶୁଖାଇ ଗୁଣ୍ଡ କରି ରଖିବ । ଏହି ଚୂର୍ଣ୍ଣ (୫୦୦ ମି.ଗ୍ରା) କୁ ଘୃତ ସହିତ ସେବନ କରିବାକୁ ଦେଲେ ଥଣ୍ଡା ଜ୍ୱର, ଜୀର୍ଣ୍ଣ ଜ୍ୱର ଓ ବିଷମ ଜ୍ୱର ଆଦିରୁ ଉପଶମ ମିଳିବ ।

୨. କାଶ — ପିପ୍ପଳୀଚୂର୍ଣ୍ଣ (୧.୫ ଗ୍ରାମ୍) ମହୁ ସହିତ ଦିନକୁ ୩ ଥର କରି ସେବନ କରିବ ।

୩. ଅଜୀର୍ଣ୍ଣ — ପିପ୍ପଳୀଚୂର୍ଣ୍ଣ ୧.୫ ଗ୍ରାମ୍‌କୁ ଖାଦ୍ୟ ପରେ ମହୁ ସହିତ ସେବନ କରିବ ।

୪. ଆମବାତ — ପିପ୍ପଳୀମୂଳ ୧-୨ ଗ୍ରାମ୍ କୁ ଘିଅରେ ଭାଜି ଚୂର୍ଣ୍ଣ କରି ମହୁ ସହିତ ଦିନକୁ ୨ ଥର ସେବନ କରିବ ।

୫. ଅଧକପାଳି ବ୍ୟଥା — ପିପ୍ପଳୀ ଓ ବଚଚୂର୍ଣ୍ଣ ୨ ଗ୍ରାମ୍ ଲେଖାଏଁ ନେଇ ମହୁ ସହିତ ମିଶାଇ ଦିନକୁ ୨ ଥର ସେବନ କଲେ ଅଧକପାଳି ମୁଣ୍ଡ ବିନ୍ଧା ଦୂର ହୁଏ ।

୬. ମେଦ ରୋଗ — ପିପ୍ପଳୀ ଓ ହରିଦ୍ରା ଚୂର୍ଣ୍ଣ ୨ ଗ୍ରାମ୍ ଲେଖାଏଁ ନେଇ ଚହ୍ଲାଦହି ସହିତ ୨ ମାସ ସେବନ କରିବ ।

୭. ପ୍ରସବ କଷ୍ଟରେ — ପିପ୍ପଳୀ ମୂଳ ଚୂର୍ଣ୍ଣ (୨ ଗ୍ରାମ୍) ପାନରେ ରଖି ପ୍ରସୂତା ସ୍ତ୍ରୀକୁ ଖାଇବାକୁ ଦେଲେ ସନ୍ତାନ ପ୍ରସବରେ କଷ୍ଟ ହୋଇ ନଥାଏ ଏବଂ ପ୍ରସବ ପରେ ଏହି ଚୂର୍ଣ୍ଣକୁ ଗରମ ପାଣିରେ ପକାଇ ଚା' ପରି ପିଇବାକୁ ଦିଆଯାଏ ।

୮. ଉରୁସ୍ତମ୍ଭ — ପିପ୍ପଳୀଚୂର୍ଣ୍ଣ ୧ ଗ୍ରାମ୍ ଗୋମୂତ୍ର ୧ କପ୍ ସହିତ ମିଶାଇ ପ୍ରତିଦିନ ପିଇବାକୁ ଦେବ ।

୯. ସ୍ୱରଭଙ୍ଗ — ଏହାର ଚୂର୍ଣ୍ଣ (୫୦୦ ମି.ଗ୍ରା) କୁ ଗୋମୂତ୍ର (୧ କପ୍) ସହିତ ନିୟମିତ ସେବନ କରିବ ।

Digitized by srujanika@gmail.com

୧୦.ରସାୟନ : ପିପ୍ପଳୀ ୫୦୦ ମି.ଗ୍ରା. ସହିତ ସାମାନ୍ୟ ଗୁଡ଼ ମିଶାଇ ନିୟମିତ ସେବନ କରିବ ।

ପ୍ରମୁଖ ଔଷଧି : ଗୁଡ଼ପିପ୍ପଳୀ, ପିପ୍ପଳୀଖଣ୍ଡ, ପିପ୍ପଲ୍ୟାସବ ।



Digitized by srujanika@gmail.com

# ପୁରୁଣି

## BOERHAAVIA DIFFUSA (NYCTAGINACEAE)

ସଂସ୍କୃତ ନାମ: ପୁନର୍ନବା , ଶୋଥଘ୍ନୀ ; ହିନ୍ଦୀ: ଗଦହ ପୂର୍ନା ;

ଇଂରାଜୀ: Spreading Hogweed

| | |
|---|---|
| ଉପ୍ତିସ୍ଥଳ | ଓଡ଼ିଶାର ସମସ୍ତ ଅଞ୍ଚଳ, ରାସ୍ତାକଡ଼, ପଡ଼ିଆ, ବାଡ଼ିବଗିଚା, ଆଦି ସ୍ଥାନରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ପ୍ରସରଣଶୀଳ ଲତା, କାଣ୍ଡ: ୦.୬-୦.୯ ମି. ଲମ୍ବା, ପବଗଣ୍ଠି ସାମାନ୍ୟ ମୋଟା । ଶାଖା ପ୍ରସାରିତ ହୋଇ ଜମିରେ ବିଛେଇ ହୋଇ ରହିଥାଏ । ପତ୍ର: ପ୍ରତ୍ୟେକ ଗଣ୍ଠିରୁ ଛୋଟ ବଡ଼ କ୍ରମରେ ବାହାରିଥାଏ । ଏହା ମାଂସଳ, ମୃଦୁଲୋମଯୁକ୍ତ, ପତ୍ରର ତଳପାଖ ଶ୍ୱେତ ବର୍ଣ୍ଣ ଓ ଚିକ୍କଣ ଅଟେ । ଫୁଲ: ଶାଖାର ଶେଷଭାଗରେ ପତ୍ର କୋଣରୁ ବାହାରିଥାଏ । ଏହା ୫ ପାଖୁଡ଼ା ଯୁକ୍ତ, ଧଳା ଓ ଗୋଲାପି ରଙ୍ଗ, ବର୍ଷା ସମୟରେ ଫୁଲ ଓ ପରେ ଫଳ ଆସିଥାଏ । ଶ୍ୱେତ ଓ ରକ୍ତ ଭେଦରେ ଏହା ୨ ପ୍ରକାର ଅଟେ । |
| ପ୍ରଧାନ ଗୁଣ କର୍ମ | ଅଗ୍ନି ବର୍ଦ୍ଧକ, କଫଦୋଷ ନାଶକ, ମୂତ୍ରଳ । ସମସ୍ତ ପ୍ରକାର ଶୋଥ, ବୃକ୍କ ସମ୍ବନ୍ଧୀୟ ରୋଗ, ପାଣ୍ଡୁ, କାମଳା ଓ ଚକ୍ଷୁରୋଗରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର ଓ ମୂଳ |
| ମାତ୍ରା | ସ୍ୱରସର ମାତ୍ରା ୫-୧୦ ମି.ଲି, କ୍ୱାଥ ୫୦-୬୦ ମି.ଲି. । |

Digitized by srujanika@gmail.com

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଥଣ୍ଡା, ସର୍ଦ୍ଦି | ପୁରୁଣିମୂଳ ଚୂର୍ଣ୍ଣ (୩ଗ୍ରାମ୍) କ୍ଷୀରରେ ଫୁଟାଇ ସେଥିରେ ୨୦ ଗ୍ରାମ୍ ମିଶ୍ରୀ ମିଶାଇ ଦିନକୁ ୨ ଥର ୩-୫ ଦିନ ପର୍ଯ୍ୟନ୍ତ ପିଇବ । |
| ୨. କାମଳ | ପୁରୁଣିମୂଳ ୧୦-୧୫ ଗ୍ରାମ୍ ରାତ୍ରିରେ ୧ ଗ୍ଲାସ ପାଣିରେ ବତୁରାଇ ପରଦିନ ଛାଣି ପାଣିକୁ ୨-୩ ଥରରେ ପିଇବ । ଏହି ପରି ୨-୩ ମାସ କରିବ । |
| ୩. ଶୋଥ | ପୁରୁଣିମୂଳ ୧୦ ଗ୍ରାମ୍ ଓ ଗୋଲମରିଚ ୬ଟି ଏକତ୍ର ବାଟି ୧୦-୧୫ ଦିନ ପର୍ଯ୍ୟନ୍ତ ଦିନକୁ ୨ ଥର କରି ସେବନ କରିବ । |
| ୪. ଅଶ୍ମରୀ | ପୁରୁଣିମୂଳ ୫ ଗ୍ରାମ୍, ୧ ଗ୍ଲାସ୍ କ୍ଷୀରରେ ସିଝାଇବା ପରେ ଅବଶିଷ୍ଟ ୧ କପ୍‌କୁ ପ୍ରତିଦିନ ପିଇବ । ଏହିପରି ୧ ମାସ ପର୍ଯ୍ୟନ୍ତ କରିବ । |
| ୫. ପ୍ଲୀହା ବୃଦ୍ଧି | ପୁରୁଣିମୂଳ ଚୂର୍ଣ୍ଣ ୩ ଗ୍ରାମ୍‌କୁ ଚାଉଳଧୁଆ ପାଣିରେ ୧ ମାସ ପର୍ଯ୍ୟନ୍ତ ପିଇବାକୁ ଦେବ । |
| ୬. ଚକ୍ଷୁରୋଗ | ପୁରୁଣିମୂଳ ସ୍ୱରସ ୧ ଚାମଚରେ ସାମାନ୍ୟ ଚିନି ମିଶାଇ ଦିନକୁ ଥରେ ଲେଖାଏଁ ୧ ମାସ ପର୍ଯ୍ୟନ୍ତ ପିଇଲେ ଦୃଷ୍ଟି ଶକ୍ତି ବଢ଼େ । |
| ପ୍ରମୁଖ ଔଷଧି | ପୁନର୍ଣ୍ଣବାସନ, ପୁନର୍ଣ୍ଣବା ମଣ୍ଡୁର । |



Digitized by srujanika@gmail.com

# ପେଡ଼ିପେଡ଼ିକା

## ABUTILON INDICUM (MALVACEAE)

ସଂସ୍କୃତ ନାମ: ଅତିବଳା,କଙ୍କତିକା ; ହିନ୍ଦୀ: କଂଘୀ, କକହୀ ;

ଇଂରାଜୀ: Country Mallow

| | |
|---|---|
| ଉପ୍ତିସ୍ଥଳ | ଅଧିକାଂଶ ସ୍ଥାନ, ପଡ଼ିଆ ଓ ବାଡ଼ିବଗିଚା ଆଦିରେ ସ୍ୱୟଂ ଉପ୍ନ ହୋଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହି ବନସ୍ପତିର ଉଚ୍ଚତା ୨ ରୁ ୫ ହାତ ପର୍ଯ୍ୟନ୍ତ ଅଟେ । ବର୍ଷାଋତୁରେ ଅଧିକ ପରିମାଣରେ ହୋଇଥାଏ । ପତ୍ର: ହଳଦିଆ ଓ ନାରଙ୍ଗୀ ରଙ୍ଗ । ଫୁଲ: ହଳଦିଆ ରଙ୍ଗ । ଫଳ: ଚକ୍ରାକାର, ଗୋଲ ଓ ପାନିଆ ପରି ଦନ୍ତୁରିତ । |
| ପ୍ରଧାନ ଗୁଣ କର୍ମ | ବାତଜ୍ୱର ନାଶକ, ମୂତ୍ରଜନକ, ମୃଦୁରେଚକ, ବେଦନା ନାଶକ, ରସାୟନ ଓ ବାଜୀକର । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ଫଳ, ମଞ୍ଜି ଓ ମୂଳ |
| ମାତ୍ରା | ସ୍ୱରସ : ୧୦-୨୦ ମି.ଲି., ଚୂର୍ଣ୍ଣ: ୩-୬ ଗ୍ରାମ୍ । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ବାତ ଜ୍ୱରରେ ଶରୀର ଦାହହେଲେ | ଏହାର ପତ୍ର ତଥା ମୂଳ କ୍ୱାଥ ୨୦ ମି.ଲି. ଦିନକୁ ୨ ଥର କରି ସେବନ କରିବ । |
| ୨. ମୂତ୍ରାଘାତ | ଏହାର ପତ୍ର କ୍ୱାଥ କିମ୍ବା ମୂଳକ୍ୱାଥ ୪ ଚାମଚ ମହୁ ସହିତ ସେବନ କରିବ । |
| ୩. ବଳବୃଦ୍ଧି ପାଇଁ | ଏହାର ମୂଳ ଚୂର୍ଣ୍ଣ ୫ ଗ୍ରାମ୍ ପ୍ରତିଦିନ କ୍ଷୀର ସହିତ ରାତିରେ ୩ ମାସ ପର୍ଯ୍ୟନ୍ତ ସେବନ କରିବ । |

Digitized by srujanika@gmail.com

୪. ଅଣ୍ଡଗଣ୍ଡି ଫୁଲା ଓ ଦରଜ: ଏହାର ମୂଳ ୨୦ ଗ୍ରାମକୁ କ୍ୱାଥ ପ୍ରସ୍ତୁତ କରି ମହୁ ସହିତ ଦିନକୁ ୨ ଥର ୧ ମାସ ସେବନ କରିବ ।

୫. ଦାନ୍ତମାଢ଼ିଗତ ରୋଗ: ୨୦ ଗ୍ରାମ୍ ପତ୍ରକୁ ଦରଛେଚା କରି ପାଣିରେ ସିଝାଇ (କ୍ୱାଥ) ଉଷୁମ ଅବସ୍ଥାରେ କୁଳି କରିବ । ଦିନକୁ ୩ ଥର କରିବ ।

୬. ରକ୍ତ ପ୍ରଦର: ଏହାର ମୂଳଚୂର୍ଣ୍ଣ ୫ ଗ୍ରାମ୍, ଚିନି ଓ ମହୁ ସହିତ ସେବନ କରିବ ।

୭. କାମଳା: ୨୦ ମି.ଲି. ସ୍ୱରସ ଦିନକୁ ୨ ଥର କରି ନିୟମିତ ସେବନ କରିବ ।

ପ୍ରମୁଖ ଔଷଧ: ବଳାଘୃତ, କେତକାଦି ତୈଳ, ମଧ୍ୟମାନାରାୟଣ ତୈଳ ।



Digitized by srujanika@gmail.com

# ପୋଦିନା

**MENTHA SPICATA (LEMIACEAE)**

ସଂସ୍କୃତ ନାମ: ପୂତିହା, ପୋଦିନକ, ରୋଚନୀ ; ହିନ୍ଦୀ: ପୁଦୀନା;

ଇଂରାଜୀ: Garden Mint

| | |
|---|---|
| ଉପତ୍ତିସ୍ଥଳ | ଓଡ଼ିଶାର ବାଡ଼ିବଗିଚା, ଫୁଲକୁଣ୍ଡ ଆଦିରେ ଓ ଆର୍ଦ୍ରବାଲିମିଶ୍ରିତ ମାଟିରେ ଚାଷ କରାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ କ୍ଷୁଦ୍ର ବନସ୍ପତି । ପତ୍ର : ଧାର ଦନ୍ତୁରିତ ଓ ତୁଳସୀ ପରି, କିନ୍ତୁ ସାମାନ୍ୟ କର୍କଶ, ପତ୍ରତଳେ ଛୋଟ ଛୋଟ ଗ୍ରନ୍ଥିରୁ ଏକ ପ୍ରକାର ସୁଗନ୍ଧ ଉତ୍ପନ୍ନ ହୁଏ । ଫୁଲ: ଛୋଟ, ବାଇଗଣୀ ରଙ୍ଗର ଅଟେ । |
| ପ୍ରଧାନ ଗୁଣ କର୍ମ | ଦୀପନ, ପାଚନ, କଫଂଘ୍ନ ଓ ରୁଚିକର । |
| ଔଷଧୀୟ ଉପଯୋଗୀ ଅଂଶ | ପଞ୍ଚାଙ୍ଗ, ବିଶେଷତଃ ପତ୍ର । |
| ମାତ୍ରା | ପତ୍ର ସ୍ୱରସ : ୫-୧୦ ମି.ଲି., ତୈଳ: ୧-୩ ବୁନ୍ଦା । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅଗ୍ନିମାନ୍ଦ୍ୟ, ଅଜୀର୍ଣ୍ଣ ଓ ପେଟ ଫମ୍ପାରେ | ଏହାର ପତ୍ର ୧୦ ଗ୍ରାମ୍ ସହିତ ୫ ଗ୍ରାମ୍ ଅଦା ଓ ସାମାନ୍ୟ ଲୁଣ ମିଶାଇ ଚଟଣି ପରି ଦିନକୁ ୨ ଥର ସେବନ କରିବ । |
| ୨. ମୁଖ ଦୁର୍ଗନ୍ଧ | ଏହାର ସ୍ୱରସ ପାଣିରେ ମିଶାଇ ଦିନକୁ ୨-୩ ଥର କୁଳୁକୁଞ୍ଚା କରିବ । |
| ୩. ଦାନ୍ତମୂଳ ବିନ୍ଧା | ଶୁଖିଲାପତ୍ର ଗୁଣ୍ଡରେ ସାମାନ୍ୟ ଲୁଣ ମିଶାଇ ନିୟମିତ ଦାନ୍ତ ଘଷିବ । |

Digitized by srujanika@gmail.com

୪. କାମଳା : ଏହି ପତ୍ରକୁ (୧୦ ଗ୍ରାମ୍) ଗୋଲ ମରିଚ (୫ଟି) ସହିତ ବାଟି ନିୟମିତ ୭ ଦିନ ଖାଲିପେଟରେ ସେବନ କରିବ ।

ପ୍ରମୁଖ ଔଷଧି ପୁଦିନାର୍କ ।



Digitized by srujanika@gmail.com

# ବଉଳ

## MIMUSOPS ELENGI (SAPOTACEAE)

ସଂସ୍କୃତ ନାମ: ବକୁଳ,ମଧୁଗନ୍ଧ, ଚିରପୁଷ୍ପ ; ହିନ୍ଦୀ: ମୌଲସିରୀ ;

| | |
|---|---|
| ଉତ୍ପତ୍ତିସ୍ଥଳ | ଓଡ଼ିଶାର ଅଧିକାଂଶ ସ୍ଥାନରେ ଏହା ହୋଇଥାଏ । ବିଶେଷତଃ ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ଓ ବାଣପୁରରେ ଏହି ବୃକ୍ଷ ବହୁତ ପରିମାଣରେ ଦେଖାଯାଏ । ଗ୍ରାମାଞ୍ଚଳ ମାନଙ୍କରେ ସ୍ଥାନେ ସ୍ଥାନେ ଏହା ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ବୃକ୍ଷ, ଉଚ୍ଚତା ୪୦-୫୦' ଫୁଟ, ଛାଲି: ଧୂସର ବର୍ଣ୍ଣ ଓ ମଝିରେ ଫଟା ଚିହ୍ନ । ପତ୍ର: ଚିକ୍କଣ ଓ ଜାମୁପତ୍ର ପରି । ଫୁଲ: ଧଳା, ସୁଗନ୍ଧଯୁକ୍ତ, ଫଳ: ଗୋଲ ଓ ସାମାନ୍ୟ ଲମ୍ବା, ଅଣ୍ଡାକାର, କଞ୍ଚା ଅବସ୍ଥାରେ ଏହା କ୍ଷୀରଯୁକ୍ତ ଓ କଷାୟ ସ୍ୱାଦଯୁକ୍ତ । ପକ୍ୱାବସ୍ଥାରେ ଏହା ହଳଦିଆ ଓ କଷାୟ, ମଧୁର ରସ ହୋଇଥାଏ । |
| ପ୍ରଧାନ ଗୁଣ କର୍ମ | କଷାୟରସ, ପୌଷ୍ଟିକ । ଏହା ଦନ୍ତରୋଗ, ଅତିସାର, ହଦ୍‌ରୋଗ ଓ ପ୍ରଦର ଆଦିରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ଛାଲି, ଫୁଲ ଓ ଫଳ |
| ମାତ୍ରା | କ୍ୱାଥ: ୫୦-୧୦୦ ମି.ଲି., ଫୁଲ ଚୂର୍ଣ୍ଣ : ୧-୩ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ପ୍ରଦର | ବଉଳର କଞ୍ଚାଫଳ କିମ୍ବା ଫୁଲ ୧୫ ଗ୍ରାମ୍, ପେସ୍ତା ବାଦାମର ୩ ଦାନା ଏବଂ ୩ ଗ୍ରାମ୍ |

Digitized by srujanika@gmail.com

| | |
|---|---|
| | ମିଶ୍ରି ଏକତ୍ର ମିଶାଇ ୫ ଗ୍ରାମ୍ ମାତ୍ରାରେ ପ୍ରତ୍ୟେକଦିନ ସକାଳେ ଓ ସଂନ୍ଧ୍ୟାରେ ନିୟମିତ ସେବନ କରିବ । |
| ୨. ରକ୍ତମେହ ବା ପରିସ୍ରାରେ: ରକ୍ତ ଆସୁଥିଲେ | ଏହାର ଛାଲିକୁ ସିଝାଇ କ୍ୱାଥ ପ୍ରସ୍ତୁତ କରି ଦିନକୁ ୩ ଥର କରି ପିଇବ । |
| ୩. ତରଳଝାଡ଼ା | ଛାଲିର କ୍ୱାଥ ୧କପ୍ ୨-୩ ଥର ୧ ଘଣ୍ଟା ବ୍ୟବଧାନରେ ପିଇବ । |
| ୪. କାଶ | ତାଜା ଫୁଲ (୨୫ ଗ୍ରାମ୍) କୁ ୧ ଗ୍ଲାସ୍ ପାଣିରେ ଭିଜାଇ ରାତିରେ ରଖିବ ଏବଂ ସକାଳେ ଛାଣି ପିଇବ । ଏହିପରି ୫-୭ ଦିନ କରିବ । |
| ୫. ଦନ୍ତରୋଗ | ବଉଳଛାଲି ଶୁଖାଇ ଗୁଣ୍ଡ କରି ପ୍ରତିଦିନ ଦାନ୍ତ ଘଷିବ । |
| ୬. ଦାନ୍ତର ଦୃଢ଼ତା ପାଇଁ | ବଉଳଛାଲି ଓ ଜାମୁ ଛାଲି ପ୍ରତ୍ୟେକ ୨୦ ଗ୍ରାମ୍ ନେଇ ୨ ଗ୍ଲାସ୍ ପାଣିରେ ସିଝାଇ ପ୍ରତ୍ୟହ ସକାଳେ ଓ ରାତ୍ରି ଶୋଇବାବେଳେ କୁଳି କରିବ । |
| ୭. ମୁଣ୍ଡବିନ୍ଧା | ବଉଳଫୁଲ ଚୂର୍ଣ୍ଣ ଅଥବା ଶୁଷ୍କ ଫଳଚୂର୍ଣ୍ଣକୁ ଶୁଙ୍ଘିବ । |
| ୮. ବ୍ରଣ | ଏହାର ଛାଲି କ୍ୱାଥରେ ବ୍ରଣ-ପ୍ରକ୍ଷାଳନ କରିବ । |
| ୯. ମୁଖରୋଗ ବା ତୁଣ୍ଡଘା': | ବଉଳ ଛାଲି କ୍ୱାଥରେ କୁଳି କରିବ । |
| ୧୦. ଶ୍ୱିତ୍ର ବା ଧଳାଛଉ | ଏହାର ଛାଲିକୁ ଗୋମୂତ୍ରରେ ବାଟି ସ୍ଥାନିକ ଲେପ କରିବ । |
| ପ୍ରମୁଖ ଔଷଧ | ଦଶନ ସଂସ୍କାର ଚୂର୍ଣ୍ଣ । |



Digitized by srujanika@gmail.com

# ବଜ୍ରମୂଳୀ

## SIDA CORDIFOLIA (MALVACEAE)

ସଂସ୍କୃତ ନାମ: ବଳା, ବାଟ୍ୟାଳିକା ; ହିନ୍ଦୀ: ଖିରେଟି, ବରିୟାର ;

ଇଂରାଜୀ: Country Mallow.

| | |
|---|---|
| ଉପ୍ତିସ୍ଥଳ | ପଡ଼ିଆ, ରାସ୍ତାକଡ଼, ବାଡ଼ିବଗିଚା ଓ ଅପନ୍ତରା ସ୍ଥାନମାନଙ୍କରେ ବର୍ଷତମାମ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ବୁଦା ଜାତୀୟ ବନସ୍ପତି । ଏହାର ଉଚ୍ଚତା ୨-୫ ଫୁଟ । ଅନେକ ଶାଖା ପ୍ରଶାଖାଯୁକ୍ତ । ପତ୍ର: ୨.୫ ରୁ ୫ ସେ.ମି ପର୍ଯ୍ୟନ୍ତ ଲମ୍ବା । ତୁଳସୀ ପରି ଅଗ୍ରଭାଗ ସାମାନ୍ୟ ମୁନିଆଁ । ପତ୍ରର ତଳଭାଗ ଲୋମଶ ଓ ଧାର ଗୋଲ ଓ ଦନ୍ତୁରିତ । ଫୁଲ: ହଳଦିଆ ରଙ୍ଗ । ଫଳ: ମୁଗ ପରି, ମଞ୍ଜି: ଛୋଟ, ଧୂସର ବା କଳା ରଙ୍ଗ । ଏହି ବନସ୍ପତିକୁ ଶୁଖାଇ ଝାଡୁ ପହଁରା ରୂପେ ଗାଁମାନଙ୍କରେ ବ୍ୟବହାର କରନ୍ତି । |
| ପ୍ରଧାନ ଗୁଣ କର୍ମ | ଏହା ତିକ୍ତ, ମଧୁର, ସ୍ନିଗ୍ଧ, ବାତ ପିତ୍ତ ନାଶକ । ବଳବୀର୍ଯ୍ୟ ବର୍ଦ୍ଧକ, ରୁଚିକର ଓ ରସାୟନ ଅଟେ । |
| ଔଷଧୀୟ ଉପଯୋଗୀ ଅଂଶ : | ପତ୍ର, ମୂଳ, ମଞ୍ଜି ଓ ପଞ୍ଚାଙ୍ଗ । |
| ମାତ୍ରା | ସ୍ୱରସ ୧୦-୨୦ ମି.ଲି., ଚୂର୍ଣ୍ଣ ୩-୬ ଗ୍ରାମ୍ । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ନାସାରୁ ରକ୍ତସ୍ରାବ ଏବଂ ଭ୍ରମ | ବ୍ରଜମୂଳୀ ଓ କିସ୍‌ମିସ୍ ସମପରିମାଣରେ ଏକତ୍ର ନେଇ କ୍ଷୀରରେ ସିଝାଇ ସେଥିରେ ଘିଅ ଓ ମିଶ୍ରି ମିଶାଇ ୧ କପ୍ ଦିନକୁ ୨ ଥର କରି ପିଇବାକୁ ଦେବ । |

Digitized by srujanika@gmail.com

୨. ଅର୍ଶରେ ରକ୍ତ ପଡୁଥିଲେ : (ରକ୍ତାର୍ଶ) — ଏହାର ପତ୍ରକୁ ଶାଗପରି ନିୟମିତ ଖାଇବ ।

୩. ଶୁକ୍ରମେହରେ — ପଞ୍ଚାଙ୍ଗ ସ୍ୱରସ ୧୦ ମି.ଲି. ଦିନକୁ ୨ ଥର କରି ୧ ମାସ ପର୍ଯ୍ୟନ୍ତ ମହୁ ସହିତ ସେବନ କରିବ ।

୪. ମୂତ୍ରାଲ୍ପତା — ପତ୍ରରସ ୧୦ ଗ୍ରାମ୍ ନେଇ ମିଶ୍ରି ସହିତ ମିଶାଇ ସରବତ କରି ଦିନକୁ ୨ ଥର ପିଇବ ।

୫. ସ୍ନାୟୁ ଶୂଳ — ମୂଳକ୍ୱାଥ (୨୦ ମି.ଲି.) କୁ କ୍ଷୀର (୧ କପ୍) ସହିତ ସେବନକରି ଦିନକୁ ୨ ଥର ପିଇବ ।

୬. ଶ୍ୱେତ ପ୍ରଦର — ମୂଳଚୂର୍ଣ୍ଣ (୫ ଗ୍ରାମ୍) କୁ ମହୁ ସହିତ ମିଶାଇ ପରେ କ୍ଷୀର ସହ ପିଇବ । ଏହିପରି ୩ ମାସ କରିବ ।

୭. ସ୍ୱରଭଙ୍ଗ — ଏହାର ମୂଳଚୂର୍ଣ୍ଣ ୩ ଗ୍ରାମ୍ ନେଇ ଘିଅ ସହିତ ଦିନକୁ ୩ ଥର କରି ୧ ସପ୍ତାହ ସେବନ କରିବ ।

୮. ଶରୀର ଦୁର୍ବଳତା — ବଜ୍ରମୂଳୀ ମୂଳ ଚୂର୍ଣ୍ଣ ୫ ଗ୍ରାମକୁ ଚିନି ସହିତ ମିଶାଇ ୧ ଗ୍ଲାସ୍ କ୍ଷୀର ସହ ନିୟମିତ ପିଇବ ।

୯. ଶ୍ଳୀପଦ — ବଜ୍ରମୂଳୀ ମୂଳକୁ ଚଢ଼ା ସ୍ୱରସରେ ବାଟି ସ୍ଥାନିକ ଲେପ ଦେବ ।

୧୦. ମଧୁମେହ ରୋଗୀର ଘା'ରେ — ପତ୍ରକୁ ବାଟି ସ୍ଥାନିକ ଲେପ କରିବ ।

ପ୍ରମୁଖ ଔଷଧ — ବଳାଦ୍ୟକ୍ୱାଥ, ବଳାଦ୍ୟଘୃତ, ବଳାରିଷ୍ଟ କ୍ଷୀରବଳା ତୈଳ ।



Digitized by srujanika@gmail.com

# ବାସଙ୍ଗ

## ADHATODA VASICA (ACANTHACEAE)

ସଂସ୍କୃତ ନାମ: ଅଟରୁଷକ, ବାସା ;   ହିନ୍ଦୀ: ଅଡୂସା ;

ଇଂରାଜୀ: Malabar Nut.

| | |
|---|---|
| ଉତ୍ପତ୍ତି ସ୍ଥଳ | ବାଡ଼ିବଗିଚା, ପଡ଼ିଆ ଏବଂ ବାଡ଼ମାନଙ୍କରେ ହୋଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ବୁଦା ଜାତୀୟ ସଦାହରିତ୍ ବନସ୍ପତି । ପତ୍ର: ୫-୮'' ଲମ୍ବା ଓ ୧-୨'' ଚଉଡ଼ା, ଅଗ୍ରଭାଗ ଗୋଜିଆ । ଫୁଲ: ଶ୍ୱେତବର୍ଣ୍ଣ ଅଟେ । |
| ପ୍ରଧାନ ଗୁଣ କର୍ମ | ଏହା କଫ, ରକ୍ତପିତ୍ତ, ତୃଷା,ଶ୍ୱାସ, କାଶ, ଜ୍ୱର, ଓ କ୍ଷୟରୋଗ ଦୂର କରେ । |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ଫୁଲ ଓ ମୂଳ |
| ମାତ୍ରା | ସ୍ୱରସ: ୧୦-୨୦ ମି.ଲି.<br>ମୂଳ କ୍ୱାଥ: ୪୦-୮୦ ମି.ଲି. |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ସର୍ଦ୍ଦିଜ୍ୱର | ଏହାର ୧୦-୨୦ ମି.ଲି. ପତ୍ରରସ ମହୁ କିମ୍ବା ଗୁଡ଼ ସହିତ ଦିନକୁ ୩ ଥର ସେବନ କରିବ । |
| ୨. ରକ୍ତବାନ୍ତି; ରକ୍ତପିତ୍ତ | ଏହାର ଛାଲି, ପତ୍ର ଓ ଫୁଲକୁ ବାଟି ଘିଅରେ ଭାଜି ୨-୪ ଗ୍ରାମ୍ ମାତ୍ରାରେ ଦିନକୁ ୨ ଥର ସେବନ କରିବ । |
| ୩. ରକ୍ତସ୍ରାବ | ଏହାର ପତ୍ର ସ୍ୱରସ କିମ୍ବା କ୍ୱାଥ ଚିନି ଓ ମହୁ (୧ ଚାମଚ) ସହିତ ସେବନ କରିବ । |
| ୪. ମୂତ୍ର ଅବରୋଧରେ | ଏହାର କ୍ୱାଥ ୪୦-୮୦ ମି.ଲି. ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

| | | |
|---|---|---|
| ୫. ରକ୍ତପ୍ରଦରରେ | | ଏହି ପତ୍ର ସ୍ୱରସ ୧୦-୨୦ ମି.ଲି. ମହୁରେ ମିଶାଇ ଦିନକୁ ୨ ଥର ସେବନ କରିବ । |
| ୬. କାଶ | : | ଫୁଲର ଚୂର୍ଣ୍ଣ ୧ ଗ୍ରାମ୍ ନେଇ ମହୁ ସହିତ ମିଶାଇ ଦିନରେ ୩ ଥର ସେବନ କରିବ । |
| ୭. ନାସାରୁ ରକ୍ତସ୍ରାବ | | ପତ୍ର ସ୍ୱରସ ୨ ଟୋପା ଲେଖାଏଁ ଦିନରେ ୩-୪ ଥର ନାକରେ ପକାଇବ । |
| ୮. କାଛୁ, କୁଣ୍ଡିଆ ଓ ଚର୍ମରୋଗ | : | ଏହାର କୋମଳ ପତ୍ରକୁ ହଳଦୀ ଓ ଗୋମୂତ୍ର ସହିତ ବାଟି ଲେପ କରିବ । |
| ପ୍ରମୁଖ ଔଷଧି | | ବାସାକୁଷ୍ମାଣ୍ଡଖଣ୍ଡ, ବାସାବଲେହ, ବାସାଚନ୍ଦନାଦିତୈଳ, ବାସାରିଷ୍ଟ, |

❋ ❋ ❋

Digitized by srujanika@gmail.com

# ବାହାଡ଼ା

## TERMINALIA BELERICA (COMBRETACEAE)

ସଂସ୍କୃତ ନାମ : କଳିଦ୍ରୁମ, କର୍ଷଫଳ, ବିଭିତକ ; ହିନ୍ଦୀ: ବହେଡ଼ା;

ଇଂରାଜୀ: Beleric Myrobalan

**ଉପ୍ତତ୍ତିସ୍ଥଳ** — ଓଡ଼ିଶାର ଜଙ୍ଗଲ, ପାହାଡ଼-ତଳି ସ୍ଥାନ ଓ ରାସ୍ତାକଡ଼ ଆଦି ସ୍ଥାନମାନଙ୍କରେ ଏହା ଦେଖାଯାଏ ।

**ବନସ୍ପତି ବର୍ଣ୍ଣନା** — ଏହି ବୃକ୍ଷର ଉଚ୍ଚତା ୩୦'-୬୦' ଫୁଟ । ସ୍ଥାନେ ସ୍ଥାନେ ୧୦୦'ଫୁଟ ପର୍ଯ୍ୟନ୍ତ ହୋଇଥାଏ । ଛାଲି: ଅଧାଇଞ୍ଚ ମୋଟା, କଳା, ଧୂସରବର୍ଣ୍ଣଯୁକ୍ତ । ପତ୍ର: ମହୁଲ ପତ୍ର ପରି, ୩''-୮''ଇଞ୍ଚ ଲମ୍ୱା'' ଓ ୨''-୩'' ଚଉଡ଼ା । ଫୁଲ: ଛୋଟ, ସବୁଜ ଓ ହଳଦିଆ ରଙ୍ଗ ଓ ସୁଗନ୍ଧଯୁକ୍ତ । ଫଳ: ୧''ଲମ୍ୱା, ଗୋଲ ଏବଂ ଅଣ୍ଡାକାର, ପକ୍ୱାବସ୍ଥାରେ ଧୂସର ରଙ୍ଗ, ଫଳ ଭିତରେ ଏକ ମଞ୍ଜି ରହିଥାଏ । ଜାନୁଆରୀ-ଫେବୃୟାରୀରେ ଫଳ ପକ୍ୱ ହୋଇଥାଏ ।

**ପ୍ରଧାନ ଗୁଣ କର୍ମ** — କଷାୟସ୍ୱାଦ, କଫପିତ୍ତ ନାଶକ ଓ କାଶଘ୍ନ । ଏହା ନେତ୍ରରୋଗ, ସ୍ୱରଭେଦ, କଫରୋଗ ଓ ରକ୍ତ ଦୂଷିତଜନ୍ୟ ରୋଗରେ ପ୍ରୟୋଗ କରାଯାଏ ।

**ଔଷଧୀୟ ଉପଯୋଗୀ ଅଂଶ** — ପକ୍ୱଫଳ

**ମାତ୍ରା** : ଚୂର୍ଣ୍ଣ ୩-୬ ଗ୍ରାମ୍ ।

## ଔଷଧୀୟ ବ୍ୟବହାର

୧. **କାଶ** — ବାହାଡ଼ାଫଳଚୂର୍ଣ୍ଣ ଏବଂ ଜାଇଫଳ ଚୂର୍ଣ୍ଣ ପ୍ରତ୍ୟେକ ୨ ଗ୍ରାମ୍ ନେଇ ମହୁ ସହିତ ଦିନକୁ ୨ ଥର ସେବନ କରିବ ।

Digitized by srujanika@gmail.com

୨. ସ୍ୱରଭେଦ — ବାହାଡ଼ାଫଳ, ଅଁଳାଫଳ, ଗୋଲମରିଚ ଏବଂ ଗୁଳୁଚି ଗଣ୍ଠି ପ୍ରତ୍ୟେକ ସମଭାଗ ଚୂର୍ଣ୍ଣ କରି ଏକ କାଚଶିଶିରେ ରଖି ପ୍ରତିଦିନ ୩ ଗ୍ରାମ୍ ସକାଳ ଓ ସନ୍ଧ୍ୟାରେ ମହୁସହିତ ସେବନ କରିବ ।

୩. ତରଳଝାଡ଼ା — ବାହାଡ଼ାଫଳ ଚୂର୍ଣ୍ଣ ୩ ଗ୍ରାମ୍‌ରେ ୨ ଗ୍ରାମ୍ ଲବଙ୍ଗଚୂର୍ଣ୍ଣ ମିଶାଇ ଦିନକୁ ୨ ଥର କରି ସେବନ କରିବ ।

୪. ତୃଷା — ୩-୪ ଟି ବାହାଡ଼ା ମଞ୍ଜିକୁ ୨ ଗ୍ଲାସ ପାଣିରେ ଘୋରି ୩-୪ ଘଣ୍ଟା ବ୍ୟବଧାନରେ ୧ କପ୍ ପିଇବାକୁ ଦେବ ।

୫. ମାନସିକ ଭ୍ରମ — ବାହାଡ଼ାଚୂର୍ଣ୍ଣ ୧ ଗ୍ରାମ୍ ଓ ମିଶ୍ରି ୨ ଗ୍ରାମ୍‌କୁ ଗାଈଘିଅ ୧ ଚାମଚ ସହିତ ରାତି ଶୋଇବା ସମୟରେ ସେବନ କରିବ ।

୬. ହାକୁଟି — ବାହାଡ଼ାଚୂର୍ଣ୍ଣ ୨ ଗ୍ରାମ୍ ମହୁ ସହିତ ସେବନ କରିବ ।

୭. ଧ୍ୱଜଭଙ୍ଗ — ଏହାର ଚୂର୍ଣ୍ଣ ୬ ଗ୍ରାମ୍ ଓ ଗୁଡ଼ ୬ ଗ୍ରାମ୍ ଏକତ୍ର ମିଶାଇ ପ୍ରତିଦିନ ରାତ୍ରିରେ ସେବନ କଲେ କାମୋତ୍ତେଜନା ବୃଦ୍ଧିପାଏ ।

୮. ମନ୍ଦାଗ୍ନି — ପ୍ରତିଦିନ ସକାଳେ ୧ ଚାମଚ ବାହାଡ଼ାଚୂର୍ଣ୍ଣ ଥଣ୍ଡାପାଣି ସହିତ ସେବନ କରିବ ।

୯. ଡମକଶ୍ୱାସ — ବାହାଡ଼ାଫଳ ୧୦୦ ଗ୍ରାମ୍ ନେଇ ୨୦୦ ଗ୍ରାମ୍ ଗାଈକ୍ଷୀରରେ ୨୪ ଘଣ୍ଟା ଭିଜାଇ ରଖିବ । ଏହାପରେ ବାହାଡ଼ାକୁ ଶୁଖାଇ ଚୂର୍ଣ୍ଣ କରି ୨ ଗ୍ରାମ୍ ନେଇ ମହୁ ସହିତ ମିଶାଇ ଅଥବା ଉଷୁମ ପାଣି ସହିତ ପ୍ରତିଦିନ ୨/୩ ଥର ସେବନ କରିବ । ମଞ୍ଜିର ଶସକୁ ମହୁ ସହ ବାଟି ଖାଇବ ।

Digitized by srujanika@gmail.com

| | |
|---|---|
| ୧୦.ସର୍ଦ୍ଦିଜ୍ୱର | ବାହାଡ଼ାଚୂର୍ଣ୍ଣ ୪ ଗ୍ରାମକୁ ମହୁ ସହିତ ଦିନକୁ ୩ ଥର ସେବନ କରିବାକୁ ଦେବ । |
| ୧୧.ଲାଳସ୍ରାବ (ମୁଖରୁ) | ମୁହଁରୁ ଅଧିକାଂଶ ସମୟରେ ଅତ୍ୟଧିକ ଲାଳ ନିର୍ଗତ ହେଉଥିଲେ ବାହାଡ଼ା ଚୋପା ଓ ମିଶ୍ରି ମୁହଁରେ ରଖିଲେ ଆରାମ ମିଳିବ । |
| ୧୨.ଚର୍ମରୋଗ | ବାହାଡ଼ାଚୂର୍ଣ୍ଣ ଓ ନିମ୍ବପତ୍ର ସ୍ୱରସ ଏକାଠି ମିଶାଇ ସ୍ଥାନିକ ଲେପ କରିବ । |
| ୧୩.ଅଗ୍ନିଦଗ୍ଧବ୍ରଣ | ତତ୍‌କାଳ ଏହାର ଚୂର୍ଣ୍ଣ ଓ ମହୁ ସ୍ଥାନିକ ଲେପ କରିବ । |
| ୧୪.କେଶ ଝଡ଼ି ଯାଉଥିଲେ | ବାହାଡ଼ାଚୂର୍ଣ୍ଣକୁ ପାଣିରେ ମିଶାଇ ମୁଣ୍ଡରେ ଲଗାଇବ ଓ ୧୫ ମିନିଟ୍ ପରେ ଧୋଇବ । |
| ପ୍ରସ୍ତୁତ ଔଷଧ | ବିଭିତକ ତୈଳ, ତ୍ରିଫଳା ଚୂର୍ଣ୍ଣ, ମହାନୀଳ ତୈଳ । |



Digitized by srujanika@gmail.com

# ବ୍ରାହ୍ମୀ

## BACOPA MONNIERI (SCROPHULARIACEAE)

ସଂସ୍କୃତ ନାମ: ଐନ୍ଦ୍ରୀ, କପୋତବଙ୍କା, ସରସ୍ୱତୀ; ହିନ୍ଦୀ: ଜଳନୀମ୍ ;

ଇଂରାଜୀ: Pennywort

| | |
|---|---|
| ଉତ୍ପତ୍ତି ସ୍ଥଳ | ପାଣିଥିବା ସ୍ଥାନ ନିକଟରେ କିମ୍ବା ସନ୍ତସନ୍ତିଆ ସ୍ଥାନମାନଙ୍କରେ ଏହା ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ପ୍ରସରଣଶୀଳ ବନସ୍ପତି । ଏହାର ଶାଖା ଗଣ୍ଠିରୁ ଚେର ବାହାରି ଗଛକୁ ପ୍ରସାରିତ କରିବାରେ ସାହାଯ୍ୟ କରିଥାଏ । ପତ୍ର: ମାଂସଳ, ଛୋଟ ଓ ଲମ୍ବା । ପତ୍ରର ପଛପାଖ ବିନ୍ଦୁଯୁକ୍ତ । ଫୁଲ: ନୀଳ ଓ ମିଶ୍ରିତ ଧଳାରଙ୍ଗଯୁକ୍ତ କିମ୍ବା ଗୋଲାପି ରଙ୍ଗ । ଫଳ: ୫ ମି.ମି. ଲମ୍ବା, ଅଣ୍ଡାକାର, ଚିକ୍କଣ ଓ ଗୋଜିଆ । ସେଥିରେ ଛୋଟ ଛୋଟ ମଞ୍ଜି ଥାଏ । ଏହାର ସ୍ୱାଦ ପିତା ହୋଇଥିବାରୁ ଏହାକୁ ଜଳନୀମ ବୋଲି କୁହାଯାଏ । |
| ପ୍ରଧାନ ଗୁଣ କର୍ମ | ସ୍ମୃତିଶକ୍ତିବର୍ଦ୍ଧକ, ରସାୟନ, ଶୀତଳ ଓ ସ୍ୱର ଉତ୍ପନ୍ନକାରକ । ଏହା ପାଣ୍ଡୁ, ପ୍ରମେହ, ରକ୍ତଦୋଷ ଓ ଜ୍ୱର ନାଶ କରେ । |
| ଔଷଧୀୟ ଉପଯୋଗୀ ଅଂଶ | ପଞ୍ଚାଙ୍ଗ । |
| ମାତ୍ରା | ସ୍ୱରସ: ୧୦-୨୦ ମି.ଲି. । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ଅପସ୍ମାର, ଉନ୍ମାଦ | ୧୦-୨୦ ମି.ଲି. ପତ୍ର ରସ କିମ୍ବା ପତ୍ର ଚୂର୍ଣ୍ଣ (୩-୫ ଗ୍ରାମ୍) ଦିନରେ ୩ ଥର ୧୦୦-୨୫୦ ମି.ଲି. କ୍ଷୀର ସହିତ ସେବନ କରିବ । |

Digitized by srujanika@gmail.com

| | |
|---|---|
| ୨. ଦୃଷ୍ଟିହୀନତା | ୩-୫ ଗ୍ରାମ୍ ପତ୍ର ଚୂର୍ଣ୍ଣ ପ୍ରତିଦିନ ଭୋଜନ ସହିତ ଦିନକୁ ୨ ଥର କରି ସେବନ କରିବ । |
| ୩. ବଳବୃଦ୍ଧି ପାଇଁ | ୫-୧୦ ମି.ଲି. ପତ୍ର ରସ କ୍ଷୀର ସହିତ ଦିନରେ ୨ ଥର କରି ସେବନ କରିବ । |
| ୪. ଧାତୁକ୍ଷୟ | ୧୫ ଟି ପତ୍ର ଦିନରେ ୩ ଥର କ୍ଷୀର ସହିତ ବାଟି ସେବନ କରିବ । ଏହିପରି ୩ ମାସ କରିବ । |
| ୫. ସ୍ୱରଭଙ୍ଗ | ପଞ୍ଚାଙ୍ଗ ଚୂର୍ଣ୍ଣ (୫ ଗ୍ରାମ୍) ଘିଅ ସହିତ ଦିନକୁ ୩ ଥର ସେବନ କରିବ । |
| ପ୍ରମୁଖ ଔଷଧ | ବ୍ରାହ୍ମୀ ତୈଳ, ବ୍ରାହ୍ମୀ ଘୃତ, ବ୍ରାହ୍ମୀ ପାନକ । |



Digitized by srujanika@gmail.com

# ବେଗୁନିଆ

## VITEX NEGUNDO (VERBENACEAE)

ସଂସ୍କୃତ ନାମ: ନିର୍ଗୁଣ୍ଡି, ଶେଫାଳିକା ; ହିନ୍ଦୀ : ସମ୍ଭାଲୁ ;

ଇଂରାଜୀ: Five Leaved Chaste.

| | |
|---|---|
| ଉପତ୍ତିସ୍ଥଳ | ବାଡ଼ିବଗିଚା, ରାସ୍ତାକଡ଼, ପଡ଼ିଆ, ଗାଁ ମୁଣ୍ଡ ଓ ନଦୀକୂଳ ଆଦି ସ୍ଥାନମାନଙ୍କରେ ଆପେ ଆପେ ହୋଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହି ବୁଦା ଆକାରର ବନସ୍ପତିର ଉଚ୍ଚତା ପ୍ରାୟ ୧.୮୦ ରୁ ୯.୪୦ ମିଟର । ଶ୍ୱେତାଭ ଲୋମଯୁକ୍ତ, କାଣ୍ଡ: ଧୂସର ବର୍ଣ୍ଣ, ପତ୍ର: ୨-୫'' ଲମ୍ବା । ବୃନ୍ତ : ୩-୫ ପତ୍ର ବିଶିଷ୍ଟ ପତ୍ରର ଅଗ୍ରଭାଗ ମୁନିଆଁ । ପତ୍ରର ଉପର ଭାଗ ସବୁଜ ଓ ତଳଭାଗ ଧଳାରଙ୍ଗଯୁକ୍ତ । ଫୁଲ: ଧଳା ଓ ହାଲ୍କା ନୀଳରଙ୍ଗଯୁକ୍ତ । ଫଳ: ଛୋଟ ଛୋଟ ଓ ଗୋଲ, ପକ୍ୱାବସ୍ଥାରେ କଳା ରଙ୍ଗ ହୋଇଥାଏ । |
| ପ୍ରଧାନ ଗୁଣ କର୍ମ | ଏହା ବାତ ଓ କଫନାଶକ, ଜ୍ୱରଘ୍ନ, ବେଦନାନାଶକ, ଆମ ପାଚକ ଓ ଶୋଥହର, |
| ଔଷଧୀୟ ଉପଯୋଗୀ ଅଂଶ | ପତ୍ର, ମୂଳ ଓ ପଞ୍ଚାଙ୍ଗ । |
| ମାତ୍ରା | ପତ୍ର ସ୍ୱରସ: ୧୦-୨୦ ମି.ଲି.,<br>ମୂଳ ଛାଲିଚୂର୍ଣ୍ଣ: ୩-୬ ଗ୍ରାମ୍<br>ମଞ୍ଜି ଚୂର୍ଣ୍ଣ: ୩-୬ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଗୃଧ୍ରସୀ ବାତରେ | ଏହାର ପତ୍ର ଗରମ କରି ବ୍ୟଥା ସ୍ଥାନରେ ବାନ୍ଧିଦେବ ଏବଂ ତା ଉପରେ ଉଷୁମ ସେକ |

Digitized by srujanika@gmail.com

| | | |
|---|---|---|
| | | ଦେବ । ଏହା ସହିତ, ବେଗୁନିଆ ପତ୍ର, ରସୁଣ ଓ ଶୁଣ୍ଠି ପ୍ରତ୍ୟେକ ୫ ଗ୍ରାମ୍ ନେଇ ଏକାଠି କ୍ୱାଥ ପ୍ରସ୍ତୁତ କରି ଦିନକୁ ୨ ଥର କରି ପିଇବ । |
| ୨. ଆମବାତ | | ବେଗୁନିଆ ପତ୍ର (୨୦ ଗ୍ରାମ୍) କ୍ୱାଥ ଦିନକୁ ୨ ଥର କରି ୧ ମାସ ପିଇବାକୁ ଦେବ । |
| ୩. କାଶରେ କଫ ପଡ଼ିଲେ | : | ଏହାର ପତ୍ରକୁ (୧୦ ଗ୍ରାମ୍) ବାଟି ଘିଅରେ ଭାଜି କରି ସେବନ କରିବ । |
| ୪. ପୁରାତନ କାଶ | | ୧୦ ଗ୍ରାମ୍ ପତ୍ରକୁ ୨୦ ମି.ଲି. ଗୋମୂତ୍ର ସହିତ ବାଟି ଦିନକୁ ୨ ଥର କରି ୭ ଦିନ ପିଇବାକୁ ଦେବ । |
| ୫. ଚର୍ମରୋଗ | | ବେଗୁନିଆର ପତ୍ର ସ୍ୱରସ ୧୦ ମି.ଲି. ନେଇ ୨୦୦ ମି.ଲି. ପାଣିରେ ମିଶାଇ ପ୍ରତିଦିନ ଖାଲି ପେଟରେ ୧ ମାସ ପିଇବ । |
| ୬. ସୂତିକା ଜ୍ୱର | : | ବେଗୁନିଆ ପତ୍ର(୨୦ ଗ୍ରାମ୍) କୁ ପାଣି (୧ଗ୍ଲାସ୍) ରେ ସିଝାଇ ଥଣ୍ଡା କରି ପିଇବାକୁ ଦେବ । |
| ୭. ଗର୍ଭାଶୟ ଶୁଦ୍ଧି ପାଇଁ | | ଏହାର ଫୁଲକୁ ଶୁଖାଇ ଗୁଣ୍ଡ କରି ୩ ଗ୍ରାମ୍ ନେଇ ମହୁ ସହିତ ୧ ସପ୍ତାହ ପର୍ଯ୍ୟନ୍ତ ସେବନ କରିବ । |
| ୮. ଆଘାତ ଜନିତ ଫୁଲା; ଅଣ୍ଡକୋଷ ବ୍ୟଥାରେ | | ବେଗୁନିଆ ପତ୍ରକୁ ବାଟି ସ୍ଥାନିକ ଲେପ ଦେବ । |
| ୯. ମୁଖ ପାକ | : | ଏହାର ପତ୍ର ସ୍ୱରସରେ ମହୁ ମିଶାଇ ମୁଖରେ ଲେପ କରିବ । |
| ୧୦.କର୍ଣ୍ଣଶୂଳ ଓ ସ୍ରାବରେ | | ଏହାର ପତ୍ର ରସକୁ ସାମାନ୍ୟ ଉଷୁମ କରି ୨-୪ ଟୋପା କାନରେ ପକାଇବ । |
| ପ୍ରମୁଖ ଔଷଧି | | ନିର୍ଗୁଣ୍ଡୀକଳ୍ପ, ନିର୍ଗୁଣ୍ଡୀ ତୈଳ । |



Digitized by srujanika@gmail.com

# ବେଲ

## AEGLE MARMELOS (RUTACEAE)

ସଂସ୍କୃତ ନାମ: ବିଲ୍ୱ, ଶ୍ରୀଫଳ ; ହିନ୍ଦୀ : ବେଲ୍ ;

ଇଂରାଜୀ: Bael Fruit

| | |
|---|---|
| ଉତ୍ପତ୍ତିସ୍ଥଳ | ଓଡ଼ିଶାର ବିଭିନ୍ନ ସ୍ଥାନ, ଜଙ୍ଗଲ, ରାସ୍ତାକଡ଼ରେ ଦେଖାଯାଏ ଓ ମନ୍ଦିର ନିକଟରେ ରୋପଣ କରାଯାଇଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ବୃକ୍ଷ । ଏହାର ଉଚ୍ଚତା ପ୍ରାୟ ୩୦-୫୦ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ଶାଖା: ସିଧା, ମୋଟା ଏବଂ ୧'' ଇଞ୍ଚ ଲମ୍ବା, କଣ୍ଟାଯୁକ୍ତ । ପତ୍ର: ସଂଯୁକ୍ତ, ତ୍ରିପତ୍ରକ ଓ ସୁଗନ୍ଧିତ । ଫଳ: ଗୋଲାକାର, ୩-୮'' ଇଞ୍ଚ ବ୍ୟାସଯୁକ୍ତ ବାହାର ଚୋପା କଠିନ ଓ ମୋଟା । ମଞ୍ଜି: ଛୋଟ ଛୋଟ ଓ ଅନେକ ଥାଏ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ, କଫବାତ ଶାମକ, ଅଗ୍ନିବର୍ଦ୍ଧକ ଏହା ଅତିସାର, ପ୍ରବାହିକା, ଗ୍ରହଣୀ, ମଧୁମେହ ଓ ବାତରୋଗ ଆଦିରେ ପ୍ରୟୋଗ କରାଯାଏ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ, ଛାଲି, ଫଳ ଓ ପତ୍ର |
| ମାତ୍ରା | ଚୂର୍ଣ୍ଣ : ୩-୬ ଗ୍ରାମ୍, ସ୍ୱରସ:୧୦-୨୦ ମି.ଲି. |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ତରଳଝାଡ଼ାରେ | ବେଲଶୁଣ୍ଠା ବା ଫଳମଜ୍ଜା ୧୦ ଗ୍ରାମ୍ ଓ ଆମ୍ବକୋଇଲି ୧୦ ଗ୍ରାମ୍ ନେଇ କ୍ୱାଥ ପ୍ରସ୍ତୁତ କରି ସେଥିରେ ଚିନି ଓ ମହୁ ମିଶାଇ ପିଇବ । |

Digitized by srujanika@gmail.com

୨. ଝାଡ଼ାରେ ରକ୍ତ ପଡ଼ିଲେ : ବେଲଶୁଣ୍ଠା ୫ ଗ୍ରାମ୍ ଏବଂ ଗୁଡ଼ ୫ ଗ୍ରାମ୍ ଏକତ୍ର ମିଶାଇ ଦିନକୁ ୨ ଥର କରି ସେବନ କରିବ ।

୩. ଅଗ୍ନିମାନ୍ଦ୍ୟ — କଞ୍ଚାବେଲଶୁଣ୍ଠାକୁ କାଞ୍ଜିରେ ବଟୁରାଇ ସେବନ କଲେ ଅଗ୍ନିମାନ୍ଦ୍ୟ, ଅରୁଚି ଏବଂ ଆମବାତରୁ ସୁଫଳ ମିଳେ ।

୪. କୋଷ୍ଠକାଠିନ୍ୟ — ପାଚିଲାବେଲକୁ ପାଣିରେ ବାଟି ଛାଣିକରି ପରେ ମିଶ୍ରୀ ମିଶାଇ ଓ ଗରମ କରି ଖାଦ୍ୟ ଖାଇବା ପରେ ପ୍ରତିଦିନ ସେବନ କରିବ ।

୫. ବହୁମୂତ୍ର — ବେଲମଜ୍ଜା ୧୨ ଗ୍ରାମ୍ ଓ ଶୁଣ୍ଠି ୬ ଗ୍ରାମ୍କୁ ୫୦୦ ମି.ଲି. ପାଣିରେ ସିଝାଇ (କ୍ୱାଥ) ଅବଶିଷ୍ଟ ୧/୮ ଭାଗ ପାଣିକୁ ଦୁଇଥର କରି ପିଇବ ।

୬. ମଧୁମେହ — ବେଲପତ୍ର ୧୦ ଟି ଓ ନିମ୍ବପତ୍ର ୧୦ ଟି କୁ ଏକତ୍ର ବାଟି ପ୍ରତିଦିନ ସେବନ କରିବ ।

୭. ଅମ୍ଳପିତ୍ତ — ବେଲପତ୍ର (୧୦ ଗ୍ରାମ୍) କୁ ବାଟି କରି ସେଥିରେ ୫ ଗ୍ରାମ୍ ମିଶ୍ରୀ ମିଶାଇ ଦିନକୁ ୩ ଥର କରି ସେବନ କରିବ ।

୮. ଅଜୀର୍ଣ୍ଣ — ବେଲପତ୍ର ରସ ୨ ଚାମଚରେ ଗୋଲମରିଚ ୫ଟି ଓ ସାମାନ୍ୟ ସୈନ୍ଧବ ଲବଣ ମିଶାଇ କରି ସେବନ କରିବ ।

୯. ଧ୍ୱଜଭଙ୍ଗ — ବେଲମଜ୍ଜା ୫ ଗ୍ରାମ୍, ଅଶ୍ୱଗନ୍ଧା-୫ ଗ୍ରାମ୍ ଓ ମିଶ୍ରି ୫ ଗ୍ରାମ୍ ଏକାଠି କରି ଚୂର୍ଣ୍ଣ ପ୍ରସ୍ତୁତ କରିବ ଏବଂ ଦିନକୁ ୨ ଥର ସକାଳ ଓ ସନ୍ଧ୍ୟାରେ ନିୟମିତ ୩ ମାସ ସେବନ କରିବ ।

୧୦. ଶରୀର ଦୁର୍ଗନ୍ଧ — ଝାଳଦ୍ୱାରା ଦୁର୍ଗନ୍ଧ ଆସୁଥିଲେ ବେଲପତ୍ରର ସ୍ୱରସ ୨ ଚାମଚ ପ୍ରତିଦିନ ୨ ଥର ପିଇବ

Digitized by srujanika@gmail.com

| | |
|---|---|
| | ଏବଂ ବେଲପତ୍ରକୁ ବାଟି ତାର ରସ ଦେହରେ ଲଗାଇବ ଓ କିଛି ସମୟପରେ ସ୍ନାନ କରିବ । |
| ୧୧.ବାତବ୍ୟାଧି | ବେଲମୂଳ ଛାଲି ଓ ଭଡ଼ାମୂଳଛାଲି ପ୍ରତ୍ୟେକ ୧୦ ଗ୍ରାମ୍ ନେଇ ସିଝାଇ (କ୍ୱାଥ) ପ୍ରତିଦିନ ୨ଥର ପିଇବ । |
| ୧୨.ଦୁଷ୍ଟ ଘା' | କଞ୍ଚାବେଲ ଭିତର ମଞ୍ଜାକୁ ପାଣିରେ ଗରମ କରି ନିୟମିତ କୁଳି କରିବ । |
| ପ୍ରମୁଖ ଔଷଧି | ବିଲ୍ୱପଂଚକ କ୍ୱାଥ, ବିଲ୍ୱାଦି ଚୂର୍ଣ୍ଣ, ବିଲ୍ୱାଦିଘୃତ । |



Digitized by srujanika@gmail.com

# ଭୂଇଁଅଁଳା

## PHYLLANTHUS AMARUS (EUPHORBIACEAE)

ସଂସ୍କୃତ ନାମ: ଭୂମ୍ୟାମଳକୀ,ଭୂଧାତ୍ରୀ, ବହୁଫଳା, ବହୁପତ୍ରା; ହିନ୍ଦୀ: ଭୂଇଁ ଆମ୍ଳା;

| | |
|---|---|
| ଉପ୍ତିସ୍ଥଳ | ଅଧିକାଂଶ ସ୍ଥାନ, ବାଡ଼ି ବଗିଚା, ପଡ଼ିଆ, ଜମି, ରାସ୍ତାକଡ଼ ଆଦି ସ୍ଥାନମାନଙ୍କରେ ଓ ବର୍ଷାଋତୁରେ ପ୍ରଚୁର ପରିମାଣରେ ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହା ୩୦-୪୦ ସେ.ମି. ଉଚ୍ଚତା ବିଶିଷ୍ଟ ବନସ୍ପତି । ପତ୍ର: ଅଁଳା ପରି, ଫୁଲ: ଛୋଟ, ସବୁଜ କିମ୍ବା ଧଳାରଙ୍ଗ, ଫଳ: ଗୋଲାକାର, ଛୋଟ ଓ ଅଁଳା ପରି ଏବଂ ଏହା ପ୍ରତ୍ୟେକ ପତ୍ରର ପଶ୍ଚାତ୍ ଭାଗରେ ଦେଖିବାକୁ ମିଳେ । ବସନ୍ତ ଋତୁରେ ଫଳ ହୋଇଥାଏ ଓ ଗ୍ରୀଷ୍ମ ଋତୁରେ ଗଛ ନଷ୍ଟ ହୋଇଯାଏ । |
| ପ୍ରଧାନ ଗୁଣ କର୍ମ | କାଶ ଶ୍ୱାସ ହର, ମୂତ୍ରଜନକ, ଦାହଶାମକ, ଶୋଥହର, ବ୍ରଣରୋପକ ଏବଂ ରୋଗ ପ୍ରତିରୋଧକ ଶକ୍ତିବର୍ଦ୍ଧକ ଓ ରକ୍ତବର୍ଦ୍ଧକ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ ଓ ସମସ୍ତ ଅଂଶ । |
| ମାତ୍ରା | ସ୍ୱରସ : ୧୦-୨୦ ମି.ଲି. , ଚୂର୍ଣ୍ଣ ୩-୬ ଗ୍ରାମ୍ । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ଅତ୍ୟଧିକ ଋତୁସ୍ରାବ, ରକ୍ତପ୍ରଦର | ଏହାର ପଞ୍ଚାଙ୍ଗ (୧୫ ଗ୍ରାମ୍) ଚାଉଳଧୂଆ ପାଣି ସହିତ ବାଟିକରି ଖାଇଲେ ୨-୩ ଦିନ ମଧ୍ୟରେ ଉପଶମ ହୋଇଥାଏ । |
| ୨. କାମଳା ବା ଜଣ୍ଡିସ୍ | ଏହାର ପଞ୍ଚାଙ୍ଗକୁ ବାଟି (୧୫ ଗ୍ରାମ୍) ଚହ୍ଲାଦହି ସହିତ ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ଅରୁଚି | ଏହାର ସ୍ୱରସ ୨୦ ମି.ଲି. ଏବଂ ଗୋଲମରିଚ ଚୂର୍ଣ୍ଣ ୧ ଗ୍ରାମ୍ ମିଶାଇ ଦିନକୁ ୨ ଥର ଖାଲି ପେଟରେ ସେବନ କରିବ । |
| ୪. ତୁଣ୍ଡ ଘା' | ଏହାର ପତ୍ର ରସ ୪ ଚାମଚ ଉଷୁମ ପାଣି ସହିତ ମିଶାଇ କୁଳୁକୁଞ୍ଚା କରିବ, ଏହିପରି ୫-୭ ଦିନ କରିବ । |
| ୫. ରୋଗ ପ୍ରତିରୋଧକ ଶକ୍ତିବୃଦ୍ଧି, ରକ୍ତହୀନତା | ଏହାର ପଞ୍ଚାଙ୍ଗ କ୍ୱାଥ ୧ କପ୍ ଦିନକୁ ୨ ଥର କରି ମହୁ ସହିତ ନିୟମିତ ସେବନ କରିବେ । |
| ପ୍ରମୁଖ ଔଷଧ | ବିଦାରିଘୃତ, ମଧୁକାଦ୍ୟତୈଳ । |



Digitized by srujanika@gmail.com

# ଭୂଇଁନିମ୍ବ

## ANDROGRAPHIS PANICULATA (ACANTHACEAE)

ସଂସ୍କୃତ ନାମ: ଭୂନିମ୍ବ, ଯବତିକ୍ତା ; ହିନ୍ଦୀ: କାଲ୍‌ମେଘ,ଦେଶୀ ଚିରେଇତା ;

ଇଂରାଜୀ: Kalmegh.

| | |
|---|---|
| ଉତ୍ପତ୍ତି ସ୍ଥଳ | ଓଡ଼ିଶାର ଅଧିକାଂଶ ଅଞ୍ଚଳରେ ଆପେ ଆପେ ଉଠିଥାଏ । |
| ବନସ୍ପତି ବର୍ଣ୍ଣନା | ଏହି ବନସ୍ପତି ୧ ମିଟର ଉଚ୍ଚତା ବିଶିଷ୍ଟ । ବହୁ ଶାଖା ପ୍ରଶାଖାଯୁକ୍ତ । ପତ୍ର: ୫ ରୁ ୬.୬ ସେ.ମି ଲମ୍ବ । ଅଗ୍ରଭାଗ ସରୁ, ଲଙ୍କାମରିଚ ପରି । ପତ୍ରର ଆକୃତି ଓ ସ୍ୱାଦ ଅଧିକ ପିତା । ଫୁଲ: ଛୋଟ ଓ ଶ୍ୱେତବର୍ଣ୍ଣଯୁକ୍ତ । ଫଳ: ପ୍ରାୟ ୧୮ ମି.ମି ଲମ୍ବା ଓ ଗୋଲ । ଗଛ ଶୁଷ୍କ ଅବସ୍ଥାରେ ନେଳିରଙ୍ଗ ଦେଖାଯାଏ । |
| ପ୍ରଧାନ ଗୁଣ କର୍ମ | ଦୀପନ, ପାଚନ, ଜ୍ୱରଘ୍ନ, ଦାହଶାମକ, ପିତ୍ତବିରେଚକ ଏବଂ କୃମିଘ୍ନ । |
| ଔଷଧୀୟ ଉପଯୋଗୀ ଅଂଶ | ପଞ୍ଚାଙ୍ଗ । |
| ମାତ୍ରା | ଚୂର୍ଣ୍ଣ : ୧-୩ ଗ୍ରାମ୍, ସ୍ୱରସ: ୫-୧୦ମି.ଲି., କ୍ୱାଥ: ୨୦-୪୦ ମି.ଲି. । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ସାଧାରଣ ଜ୍ୱର | ଏହାର ସ୍ୱରସ ୧୦ ମି.ଲି. ଗୋଲମରିଚ ୫ ଗ୍ରାମ୍ ସହିତ ମିଶାଇ ଦିନକୁ ୨ ଥର ସେବନ କରିବ । |
| ୨. ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଓ ଯକୃତବୃଦ୍ଧି | ଏହାର ପତ୍ର ୨୦ ଗ୍ରାମ୍ ସିଝାଇ ପାଚନ ପ୍ରସ୍ତୁତ କରି ସାମାନ୍ୟ ମହୁ ମିଶାଇ ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ଶୋଥ | ଏହାର ପତ୍ର ୧୦ ଗ୍ରାମ୍ ଓ ଶୁଣ୍ଠୀ ୫ ଗ୍ରାମ୍ କ୍ୱାଥ ପ୍ରସ୍ତୁତ କରି ୭ ଦିନ ସେବନ କରିବ । |
| ୪. ସୂତ୍ର କୃମି | ଏହାର ଫଳଚୂର୍ଣ୍ଣ ୨ ଗ୍ରାମ୍ ରାତିରେ ଶୋଇବା ବେଳେ ଚିନିପାଣି ସହିତ ପିଇବାକୁ ଦେବ । |
| ୫. ଉଦର ଶୂଳ | ଏହାର ପତ୍ର ୧୦ ଗ୍ରାମକୁ ୧ ଗ୍ଲାସ ପାଣିରେ ସିଝାଇ ସେଥିରେ ଗୋଲମରିଚ ୭ ଟି ମିଶାଇ ସେବନ କରିବ । |
| ପ୍ରମୁଖ ଔଷଧି | ଭୂନିମ୍ବାଦି ଚୂର୍ଣ୍ଣ । |



Digitized by srujanika@gmail.com

# ଭୃଙ୍ଗରାଜ

## ECLIPTA ALBA (ASTERACEAE)

ସଂସ୍କୃତ ନାମ: କେଶରଞ୍ଜନ, କେଶରାଜ, ମାର୍କବ; ହିନ୍ଦୀ: ଭାଙ୍ଗରା;

| | |
|---|---|
| ଉପତ୍ତିସ୍ଥଳ : | ସାଧାରଣତଃ ଓଦାଳିଆ ତଥା ପାଣି ପାଖ ସ୍ଥାନମାନଙ୍କରେ ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହି ୧୫-୨୦ ସେ.ମି ଉଚ୍ଚତା ବିଶିଷ୍ଟ ବନସ୍ପତି ଅନେକ ଶାଖା ପ୍ରଶାଖାଯୁକ୍ତ ଅଟେ । ପ୍ରତ୍ୟେକ ଗଣ୍ଠିରୁ ଚେର ବାହାରି ଗଛ ଆଗକୁ ବଢ଼ିଥାଏ । ପତ୍ର: ଅଣ୍ଡାକାର ୨.୫ରୁ ୧୦ ସେ.ମି ଲମ୍ବା ଓ ୧/୪'' ଚୌଡ଼ା । ଫୁଲ: ଛୋଟ ଛୋଟ, ଧଳା ଓ ହଳଦିଆ ରଙ୍ଗ, । ଫଳ: ଧଳାରଙ୍ଗ, ଏହାର ଆକୃତି ୬ ରୁ ୮ ସେ.ମି. । |
| ପ୍ରଧାନ ଗୁଣ କର୍ମ | ତିକ୍ତରସ, ଦୀପନ, ପାଚନ, ରସାୟନ ଓ ନେତ୍ରପାଇଁ ହିତକର । |
| ଔଷଧୀୟ ଉପଯୋଗୀ ଅଂଶ | ପଞ୍ଚାଙ୍ଗ |
| ମାତ୍ରା | ସ୍ୱରସ : ୫-୧୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅମ୍ଳପିତ୍ତ | ୨ ଚାମଚ ସ୍ୱରସ ଥଣ୍ଡା କ୍ଷୀର ସହିତ ଦିନକୁ ୨ ଥର ସେବନ କରିବ । |
| ୨. ଯକୃତ ବୃଦ୍ଧି | ନିୟମିତ ଏହାର ପତ୍ରରସ (୨ ଚାମଚ) ମହୁ ସହିତ ସକାଳ ଓ ସନ୍ଧ୍ୟାରେ ୧ ମାସ ପର୍ଯ୍ୟନ୍ତ ସେବନ କରିବ । |
| ୩. ଅତିସାର (ଆମ ଓ ରକ୍ତ): | ୧-୨ ଗ୍ରାମ୍ ମୂଳ ଚୂର୍ଣ୍ଣ ପାଣି ସହତ ମିଶାଇ ଦିନକୁ ୨ ଥର କରି ସେବନ କରିବ । |

Digitized by srujanika@gmail.com

| | |
|---|---|
| ୪. ରସାୟନ | ଭୃଙ୍ଗରାଜ ପତ୍ର ଗୁଣ୍ଡ ୫ ଗ୍ରାମ୍ ପୁରୁଣା ଗୁଡ଼ (୩ ଗ୍ରାମ୍) ସହିତ ମିଶାଇ ସେବନ କରିବ ଓ କ୍ଷୀର ପିଇବ । |
| ୫. ମୁଣ୍ଡ ବିନ୍ଧା | ୧ ରୁ ୨ ଚାମଚ ପଞ୍ଚାଙ୍ଗସ୍ୱରସ ଦିନରେ ୨ ଥର ସେବନ କରିବ । |
| ୬. ଧଳାଛଉ | ୩-୬ ଗ୍ରାମ୍ ପଞ୍ଚାଙ୍ଗ ଚୂର୍ଣ୍ଣକୁ ଲୌହ ପାତ୍ରରେ ଘିଅ ସହିତ ଭାଜି ଦିନରେ ୨ ଥର ସେବନ କରିବ । |
| ୭. ଚର୍ମରୋଗ | ପତ୍ରକୁ ବାଟି ସ୍ଥାନିକ ଲେପ କରିବ । |
| ପ୍ରମୁଖ ଔଷଧି | ଭୃଙ୍ଗରାଜ ତୈଳ, ଭୃଙ୍ଗରାଜାଦି ଚୂର୍ଣ୍ଣ, ଭୃଙ୍ଗରାଜଘୃତ । |



Digitized by srujanika@gmail.com

# ମନ୍ଦାର

## HIBISCUS ROSA-SINENSIS (MALVACEAE)

ସଂସ୍କୃତ ନାମ: ଔଡ୍ରପୁଷ୍ପ, ଜପା ; ହିନ୍ଦୀ: ଗୁଡ଼ହଲ, ଜବା ;

ଇଂରାଜୀ: Chinese Hibiscus

**ଉପ୍ତିସ୍ଥଳ** — ଓଡ଼ିଶାର ପୁରପଲ୍ଲୀ, ବାଡ଼ିବଗିଚାରେ ରୋପଣ କରାଯାଇଥାଏ ।

**ବନସ୍ପତି ବର୍ଣ୍ଣନା** — ଏହି ବନସ୍ପତି ୫-୮ ଫୁଟ ଉଚ୍ଚତା ବିଶିଷ୍ଟ ଓ ସଦାହରିତ୍, ବର୍ଷତମାମ ଉପଲବ୍ଧ ହୁଏ । ପତ୍ର: ସବୁଜବର୍ଣ୍ଣ, ଚିକ୍କଣ ଓ ଦନ୍ତୁରିତ । ଫୁଲ : ପ୍ରାୟ ଚାରିପାଖୁଡ଼ା ବିଶିଷ୍ଟ, ଜନନାଙ୍ଗ କେଶର ଫୁଲର ମଧ୍ୟ ଭାଗରୁ ବାହାରକୁ ଲମ୍ୱା ଆକାରରେ ବାହାରିଯାଏ । ଫଳ: ଗୋଲାକାର, ଅନେକ ମଞ୍ଜି ସଂଯୁକ୍ତ ହୋଇ ରହିଥାଏ । ଆଜିକାଲି ଲାଲ୍, ହଳଦିଆ, ଧଳା ଓ ଈଷତ୍ ଲାଲ୍ ଆଦି ବିଭିନ୍ନ ପ୍ରକାର ଫୁଲ ଦେଖିବାକୁ ମିଳୁଅଛି ।

**ପ୍ରଧାନ ଗୁଣ କର୍ମ** — ରକ୍ତ ସଂଗ୍ରାହକ, କେଶ ପାଇଁ ହିତକର ଓ ମସ୍ତିଷ୍କଗତ ରୋଗରେ ବ୍ୟବହୃତ ହୁଏ । ଏହାର ପ୍ରୟୋଗ ସ୍ତ୍ରୀମାନଙ୍କର ପ୍ରଦରରେ କରାଯାଇଥାଏ ।

**ଔଷଧୀୟ ଉପଯୋଗୀ ଅଂଶ** : ଫୁଲ ଓ ପତ୍ର

**ମାତ୍ରା** : କଳ୍କ: ୫-୧୦ ଗ୍ରାମ୍ ।

## ଔଷଧୀୟ ବ୍ୟବହାର

୧. ସ୍ତ୍ରୀରୋଗ, କଷ୍ଟାର୍ତ୍ତବ — ୬-୧୨ ଗ୍ରାମ୍ ମନ୍ଦାର କଢ଼କୁ କାଞ୍ଜି ସହିତ ବାଟି ଦିନରେ ୨ ଥର କରି ୧ ମାସ ସେବନ କରିବ ।

Digitized by srujanika@gmail.com

| | |
|---|---|
| ୨. ପ୍ରଦର | ୧୦-୨୦ ଟି ଫୁଲକୁ ବାଟି କରି କ୍ଷୀର ସହିତ ଦିନକୁ ୨ ଥର ୩ ମାସ ସେବନ କରିବ । |
| ୩. ଅସମୟରେ ବାଳ ନ ପାଚିବା ପାଇଁ | ମନ୍ଦାର ଫୁଲ ଓ ଅଁଳାକୁ ଲୁହାପାତ୍ରରେ ବାଟ ମୁଣ୍ଡରେ ପ୍ରତିଦିନ ଲେପ କରିବେ । ଏହିପର ୧ ମାସ କରିବ । |
| ୪. ଦାନ୍ଦାରେ | ଏହାର ଫୁଲକୁ କଳା ଗାଈ ମୂତ୍ରରେ ମର୍ଦ୍ଦନ କରି ସ୍ଥାନିକ ଲେପ ଦେବ । ଏହିପରି ୨୧ ଦିନ କରିବ । |
| ୫. ହୃଦୟ ଓ ମସ୍ତିଷ୍କ ଦୌର୍ବଲ୍ୟ | ପ୍ରତିଦିନ ୫ଟି ଫୁଲକୁ ବାଟି କ୍ଷୀର ସହିତ ସରବତ କରି ପିଇବାକୁ ଦେବ । |
| ପ୍ରମୁଖ ଔଷଧି | ଜବାକୁସୁମତୈଳ । |

❋ ❋ ❋

Digitized by srujanika@gmail.com

# ମୁଥା

CYPERUS ROTUNDUS (CYPERACEAE)

ସଂସ୍କୃତ ନାମ: ବାରିଦ, ମୁସ୍ତକ ; ହିନ୍ଦୀ: ମୋଥା ;

ଇଂରାଜୀ: Nut Grass

| | |
|---|---|
| ଉପ୍ତିସ୍ଥଳ | ଚାଷଜମି, ପଡ଼ିଆ, ରାସ୍ତାକଡ଼, ବାଡ଼ିବଗିଚା ଓ ସମତଳ ଅଞ୍ଚଳରେ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ମାଟିତଳେ ଥିବା ଅଣ୍ଡାକାର କନ୍ଦରୁ ପତ୍ର ଗୁଚ୍ଛ ବାହାରିଥାଏ । ପତ୍ର: ଲମ୍ବା ଓ ପତଳା । ପୁଷ୍ପ ଦଣ୍ଡ: ସରୁ, ୨ ରୁ ୮ ଇଞ୍ଚ ଉଚ୍ଚା, ତ୍ରିକୋଣାକାର ଏବଂ ପତ୍ର ମଧ୍ୟ ଭାଗରୁ ବାହାରିଥାଏ । କନ୍ଦ: ବାହାରୁ କଳାରଙ୍ଗ ଓ ଭିତରପାଖ ଲାଲଯୁକ୍ତ ଧଳାରଙ୍ଗ ଏବଂ ସୁଗନ୍ଧଯୁକ୍ତ ହୋଇଥାଏ । |
| ପ୍ରଧାନ ଗୁଣ କର୍ମ | ଅଗ୍ନିଦୀପକ, ପାଚକ, ଗ୍ରାହୀ, ସ୍ତନ୍ୟବର୍ଦ୍ଧକ ଓ କୃମି ନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳ |
| ମାତ୍ରା | ଚୂର୍ଣ୍ଣ: ୩-୬ ଗ୍ରାମ୍, କ୍ୱାଥ ୫୦-୧୦୦ ମି.ଲି. । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ନାଳରକ୍ତଝାଡ଼ା | ୫ ଗ୍ରାମ୍ କନ୍ଦଚୂର୍ଣ୍ଣ ଘୋଳଦହି ସହିତ ମିଶାଇ ଦିନକୁ ୨ ଥର କରି ସେବନ କରିବ । |
| ୨. ଅତିସାର | ଏହାର କ୍ୱାଥ ୨୦ ମି.ଲି.କୁ ମହୁ ସହିତ ମିଶାଇ ସେବନ କରିବ । |
| ୩. ନାଳଝାଡ଼ା | ୨୦ ଟି ମୁଥାକୁ ୧ କପ୍ ଛେଳି କ୍ଷୀରରେ ସିଝାଇ ପିଇବାକୁ ଦେଲେ ଲାଳ ସହିତ ହେଉଥିବା ଝାଡ଼ା କମିଯାଏ । |

Digitized by srujanika@gmail.com

| | |
|---|---|
| ୪. ଜ୍ୱର | ମୁଥା ଓ ଘର ପୋଡ଼ିଆ ଏକତ୍ର ୨୦ ଗ୍ରାମ୍ ନେଇ ଦର ଛେଚା କରି ପାଣିରେ ଅଳ୍ପ ଗରମ କରି ପରେ ଥଣ୍ଡା କରି ପିଇବାକୁ ଦେବ । |
| ୫. ଅଗ୍ନିଦଗ୍ଧ ବ୍ରଣ | ମୁଥାକୁ ବାଟି ଥଣ୍ଡାପାଣିରେ ମିଶାଇ ବ୍ରଣ ସ୍ଥାନରେ ଲେପ କରିବ । |
| ୬. କାଶରେ | ମୁଥା ୩ ଗ୍ରାମ୍, ଗୋଲମରିଚ ଚୂର୍ଣ୍ଣ ୧ ଗ୍ରାମ୍, ମହୁ ସହ ମିଶାଇ ଦିନକୁ ୩ ଥର ଦେବ । |
| ୭. ଅଗ୍ନିମାନ୍ଦ୍ୟ | ମୁଥା ୨ ଗ୍ରାମ୍, ଅଦା ୨ ଗ୍ରାମ୍ ଓ ଗୋଲମରିଚ ୧ ଗ୍ରାମ୍ ଏକତ୍ର ମିଶାଇ ପ୍ରତିଦିନ ଖାଇବା ପୂର୍ବରୁ ସେବନ କରିବ । |
| ପ୍ରମୁଖ ଔଷଧ | ମୁସ୍ତକାଦ୍ୟ ଚୂର୍ଣ୍ଣ, ମୁସ୍ତକାଦ୍ୟରିଷ୍ଟ |



Digitized by srujanika@gmail.com

# ରାଶି

## SESAMUM INDICUM (PEDALIACEAE)

ସଂସ୍କୃତ ନାମ: ତିଳ ; ହିନ୍ଦୀ: ତିଲ୍ ; ଇଂରାଜୀ : Sesamum

**ଉତ୍ପତ୍ତିସ୍ଥଳ** : ଓଡ଼ିଶାର ଗ୍ରାମାଞ୍ଚଳ, ପଡ଼ିଆ ଓ ଚାଷଜମି ମାନଙ୍କରେ ଏହାର ଚାଷ କରାଯାଏ ଏବଂ ବର୍ଷରେ ୨ ଥର ଆଦାୟ କରାଯାଏ । ଭାଦ୍ରବ ଓ ଆଶ୍ୱିନ ମାସ ଏବଂ ମାଘ ଓ ଫାଲ୍ଗୁନ ମାସରେ ଅମଳ ହୁଏ ।

**ବନସ୍ପତି ବର୍ଣ୍ଣନା** ଏହି ବନସ୍ପତିର ଉଚ୍ଚତା ସାଢ଼େ ତିନି ଫୁଟରୁ ସାଢ଼େ ଚାରିଫୁଟ । କାଣ୍ଡ: ଅନେକ ଶାଖାପ୍ରଶାଖାଯୁକ୍ତ । ପତ୍ର: ବିଭିନ୍ନ ପ୍ରକାର, ଦନ୍ତୁରିତ ବା ଅଖଣ୍ଡିତ । ଫୁଲ: ବିଭିନ୍ନ ରଙ୍ଗ, ଧଳା, ବାଇଗଣି ଓ ଲାଲ୍ । ଫୁଲ : ଦେଢ଼ ଇଞ୍ଚରୁ ୨ ଇଞ୍ଚ ଲମ୍ବା ଓ ଅନେକ ମଞ୍ଜିଯୁକ୍ତ । ମଞ୍ଜି: ଚେପ୍ଟା, ଅଣ୍ଡାକାର, ୧ ଇଞ୍ଚ ଲମ୍ବା, ଧଳା, ଧୂସର ଓ କଳା ରଙ୍ଗ, ଋତୁ ଅନୁସାରେ ରଙ୍ଗର ପରିବର୍ତ୍ତନ ହୁଏ ।

**ପ୍ରଧାନ ଗୁଣ କର୍ମ** ଉଷ୍ଣ, ମୂତ୍ରଜନନ, କେଶ ବର୍ଦ୍ଧକ ଓ ବାଜୀକର । ଏହା ଅର୍ଶ, ଉଦରଶୂଳ ଓ ବ୍ରଣରେ ପ୍ରୟୋଗ କରାଯାଏ ।

**ଔଷଧୀୟ ଉପଯୋଗୀ ଅଂଶ** ମଞ୍ଜି

**ମାତ୍ରା** ମଞ୍ଜିଚୂର୍ଣ୍ଣ: ୩-୬ ଗ୍ରାମ୍,
ତୈଳ: ୧୦-୨୦ ମି.ଲି. ।

## ଔଷଧୀୟ ବ୍ୟବହାର

୧. **ଅର୍ଶ** ଚୋପାଛଡ଼ା ରାଶି ୫ ଗ୍ରାମ୍, ମିଶ୍ରି ୫ ଗ୍ରାମ୍‌କୁ ଗୁଣ୍ଡ କରି ଲହୁଣି ସହିତ ନିୟମିତ ସେବନ

Digitized by srujanika@gmail.com

| | |
|---|---|
| | କରିବ ଏବଂ ଗାଈଘିଅରେ ରାଶିକୁ ଭାଜି ଅର୍ଶ ସ୍ଥାନରେ ସେକ କରିବ । |
| ୨. ପ୍ରବାହିକା | କଞ୍ଚା ବେଲର ରସ ୧୦ ମି.ଲି. ଓ ରାଶି ୫ ଗ୍ରାମ୍‌କୁ ଏକତ୍ର ବାଟି ସେଥିରେ ଖଟା ଦହି ଓ ରାଶିତେଲ ୧ ଚାମଚ ମିଶାଇ ଦିନକୁ ୨ ଥର କରି ସେବନ କରିବ । |
| ୩. ମୂତ୍ରାବରୋଧ | ରାଶିଗଛର କାଣ୍ଡକୁ ଗୋଟିଏ ପାତ୍ରରେ ଜଳାଇ ପାଉଁଶ କରି ସେଥିରୁ ୧ ଚାମଚ, ଚହ୍ଲାଦହି ସହିତ ପିଇବାକୁ ଦେବ । |
| ୪. ଅଶ୍ମରୀ | ରାଶି ଗଛର କ୍ଷାର ୫୦୦ ଗ୍ରାମ୍ କୁ ମହୁ ଓ କ୍ଷୀର ସହିତ ଦିନକୁ ୨ ଥର କରି ସେବନ କରିବ । |
| ୫. ସନ୍ଧିବାତ | ରାଶି ୩ ଗ୍ରାମ୍ ଓ ଶୁଣ୍ଠିଚୂର୍ଣ୍ଣ ୩ ଗ୍ରାମ୍ ନିୟମିତ ଦିନକୁ ୨ ଥରି କରି ଉଷୁମ ପାଣି ସହିତ ୧୫ ଦିନ ପର୍ଯ୍ୟନ୍ତ ସେବନ କରିବ । |
| ୬. ମେଦବୃଦ୍ଧି | ପ୍ରତିଦିନ ସକାଳେ ରାଶିତେଲ ୧ ଚାମଚ ଉଷୁମ ପାଣି ୧ କପ୍‌ରେ ପକାଇ ପିଇବାକୁ ଦେବ । |
| ୭. ରସାୟନ | ଅଁଳାଚୂର୍ଣ୍ଣ ୫ ଗ୍ରାମ୍, କଳାରାଶି ୫ ଗ୍ରାମ୍ ଏବଂ ଭୃଙ୍ଗରାଜ ୫ ଗ୍ରାମ୍‌କୁ ଏକାଠି ଗୁଣ୍ଡ କରି ସକାଳ ଓ ସନ୍ଧ୍ୟାରେ ଥଣ୍ଡାପାଣି ସହିତ ୩ ମାସ ସେବନ କରିବ । |
| ୮. ଦାନ୍ତର ଦୃଢ଼ତା | ନିୟମିତ ୧୦ ଗ୍ରାମ୍ କଳାରାଶି ଚୋବାଇ ପରେ ଥଣ୍ଡାପାଣି ପିଇବ । |
| ୯. ଶିରଶୂଳ | ରାଶିକୁ କ୍ଷୀରରେ ବାଟି ସାମାନ୍ୟ ଉଷୁମ କରି ପୀଡ଼ା ହେଉଥିବା ସ୍ଥାନରେ ଲେପ କରିବ । |

Digitized by srujanika@gmail.com

| | |
|---|---|
| ୧୦.ମାଂସ ଖାଇ ଅଜୀର୍ଣ୍ଣ | ରାଶିଗଛର କାଣ୍ଡର କ୍ଷାର ଅଧା ଚାମଚ ପାଣିରେ ମିଶାଇ ପିଇବାକୁ ଦେବ । |
| ପ୍ରମୁଖ ଔଷଧି | ତିଳାଦିଗୁଟିକା, ତିଳାଦିଲେପ । |



Digitized by srujanika@gmail.com

# ଲେମ୍ବୁ

## CITRUS MEDICA-VAR-ACIDA (RUTACEAE)

ସଂସ୍କୃତ ନାମ: ନିମ୍ବୁ, ନିମ୍ବୁକମ୍ ; ହିନ୍ଦୀ: କାଗଜୀଲେମ୍ବୁ ; ଇଂରାଜୀ : Lemon

| | |
|---|---|
| ପ୍ରାପ୍ତିସ୍ଥାନ | ଓଡ଼ିଶାର ଅଧିକାଂଶ ବାଡ଼ି ବଗିଚାରେ ଚାଷ କରାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ୫-୧୦ ଫୁଟ ଉଚ୍ଚତା ବିଶିଷ୍ଟ ବନସ୍ପତି । ଏହାର ଦେହରେ କଣ୍ଟା ରହିଥାଏ । ପତ୍ରବୃନ୍ତ ସାମାନ୍ୟ ପକ୍ଷଯୁକ୍ତ । ଫୁଲ: ଛୋଟ, ଧଳା ଏକସାଥିରେ ୫୦-୧୦ ସଂଖ୍ୟାରେ ପତ୍ର କୋଣରେ ହୋଇଥାଏ । ଫଳ: ଗୋଲ, ଚିକ୍କଣ କିମ୍ୱା ଖଦଡ଼ିଆ, କଞ୍ଚା ଅବସ୍ଥାରେ ନୀଳବର୍ଣ୍ଣ ଓ ପାଚିଲା ଅବସ୍ଥାରେ ସାମାନ୍ୟ ହଳଦିଆ ହୋଇଯାଏ । |
| ପ୍ରଧାନ ଗୁଣ କର୍ମ | ଅମ୍ଳ, ଅଗ୍ନିଦୀପକ, ହୃଦୟ ପାଇଁ ହିତକର ଓ ଅରୁଚିନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | ଫଳ ଓ ପତ୍ର |
| ମାତ୍ରା | ଫଳ ସ୍ୱରସ: ୧୦-୨୦ ମି.ଲି. । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ଅଗ୍ନିମାନ୍ଦ୍ୟ | ୧ରୁ ୨ ଚାମଚ ରସ ଭୋଜନ ପରେ ଦିନରେ ୩ ଥର ସେବନ କରିବ । |
| ୨. ଅରୁଚି | ଲେମ୍ବୁ ରସ, ଗୋଲମରିଚ ଗୁଣ୍ଡ ଓ ଲୁଣ ଉଷୁମ ପାଣିରେ ମିଶାଇ ସେବନ କରିବ । |
| ୩. ଦେହ ଶୁଷ୍କତାରେ | ଅଳ୍ପ ଲେମ୍ବୁ, ଲୁଣ, ଚିନି ସରବତ ବାରମ୍ବାର ପିଇବାକୁ ଦେବ । |
| ୪. ଆମଜଶୂଳ | ୭-୧୪ ମି.ଲି. ରସ ୧ ଗ୍ରାମ୍ ଯବକ୍ଷାର ସହିତ ଦିନକୁ ୨ ଥର କରି ସେବନ କରିବ । |

Digitized by srujanika@gmail.com

୫. କାନବିନ୍ଧା — ଲେମ୍ବୁରସ ୨-୪ ଟୋପା ରାଶି ତେଲରେ ପକାଇ ଉଷୁମ କରି କାନରେ ପକାଇବ ।

୬. ଶୋଥ, ବେଦନା — ପତ୍ର ବାଟି ଶୋଥ-ବେଦନା ସ୍ଥାନରେ ଲେପ ଦେଲେ ଉପଶମ ମିଳେ ।

ପ୍ରମୁଖ ଔଷଧି — ବୀଜପୂରାଦି ଘୃତ, ମାତୁଲୁଙ୍ଗାଦିଯୋଗ ।

❋ ❋ ❋

Digitized by srujanika@gmail.com

# ସଜନା

MORINGA OLEIFERA (MORINGACEAE)

ସଂସ୍କୃତ ନାମ: ଶିଗ୍ରୁ, ଶୋଭାଞ୍ଜନ; ହିନ୍ଦୀ: ସହିଜନ ;

ଇଂରାଜୀ : Drumstick Plant

| | |
|---|---|
| ଉତ୍ପତ୍ତି ସ୍ଥଳ | ଓଡ଼ିଶାର ପୁରପଲ୍ଲୀ, ସହର ତଥା ବାଡ଼ି ବଗିଚା ଆଦି ସ୍ଥାନରେ ସ୍ୱୟଂ ଦେଖାଯାଏ । |
| ବନସ୍ପତି ବର୍ଣ୍ଣନା | ଏହା ୨୦-୨୫ ଫୁଟ ଉଚ୍ଚତା ବିଶିଷ୍ଟ ମଧ୍ୟମାକାର ବନସ୍ପତି । ଛାଲି: ଚିକ୍କଣ, ମୋଟା, ଧୂସରବର୍ଣ୍ଣଯୁକ୍ତ, ଲମ୍ବରେ ଫଟାଦାଗଯୁକ୍ତ । ପତ୍ର: ତ୍ରିପକ୍ଷଯୁକ୍ତ, ଫୁଲ:ଧଳାବର୍ଣ୍ଣ ଓ ଗୁଚ୍ଛାକାର, ଫଳ: ତ୍ରିକୋଣାକାର, ଅଙ୍ଗୁଳି ପ୍ରମାଣ ମୋଟା, ୯''-୨୦'' ଲମ୍ବା, ମଞ୍ଜି: ଧଳା ପକ୍ଷଯୁକ୍ତ ତ୍ରିକୋଣାକାର । ଗଛରୁ ଅଠା ବାହାରିଥାଏ । |
| ପ୍ରଧାନ ଗୁଣ କର୍ମ | ଦୀପନ, ପାଚନ, ଭେଦକ, ଚକ୍ଷୁପାଇଁ ହିତକର, ଶୋଥହର ଓ ବ୍ରଣ ଦୋଷ ନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | ମୂଳଛାଲି, ପତ୍ର, ମଞ୍ଜି ଓ ଅଠା |
| ମାତ୍ରା | ମୂଳଛାଲି କ୍ୱାଥ : ୧୦-୨୦ ମି.ଲି., ମଂଜିଚୂର୍ଣ୍ଣ: ୧-୩ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ସୂତ୍ରକୃମି | ୧-୨ ଗ୍ରାମ୍ ମଞ୍ଜିଚୂର୍ଣ୍ଣ ପାଣି ସହିତ ଦିନକୁ ୨ ଥର କରି ୭ ଦିନ ସେବନ କରିବ । |
| ୨. ନାସାଗତ ରୋଗ ; ପ୍ରତିଶ୍ୟାୟରେ | ୫-୧୦ ଗ୍ରାମ୍ ମୂଳଛାଲିବାଟି ୨ ଚାମଚ ଘିଅରେ ଉଷୁମ କରି ଦିନକୁ ୨ ଥର ସେବନ କରିବ । |

Digitized by srujanika@gmail.com

| | |
|---|---|
| ୩. ଆମଜଶୂଳ | ୧୪-୨୮ ମି.ଲି. କ୍ୱାଥ ୧ ଗ୍ରାମ୍ ଭଜାହିଙ୍ଗୁ ଏବଂ ୧ ଗ୍ରାମ୍ ଯବକ୍ଷାର ସହିତ ଦିନରେ ୨ ଥର ସେବନ କରିବ । |
| ୪. କର୍ଣ୍ଣଶୂଳ | ୨-୪ ବିନ୍ଦୁ ମଞ୍ଜି ସ୍ୱରସ ଅଳ୍ପ ଉଷୁମ କରି କାନରେ ୨-୩ ଥର ଦିନକୁ ପକାଇବ । |
| ୫. ଫୁଲା ଦରଜ | ଛାଲି ଓ ପତ୍ର ବାଟି ଫୁଲା ଓ ଦରଜ ସ୍ଥାନରେ ଲେପ ଦେଲେ ଫୁଲା ଓ ବେଦନାରୁ ଉପଶମ ମିଳେ । |
| ୬. ଉଚ୍ଚ ରକ୍ତଚାପ | ଅନ୍ୟାନ୍ୟ ଔଷଧ ସହ ସଜନା ଶାଗ ଖାଇଲେ ଉଚ୍ଚରକ୍ତଚାପ କମାଇବାରେ ବିଶେଷ ସହାୟକ ହୋଇଥାଏ । ପ୍ରତିଦିନ ସକାଳେ ସଜନା ପତ୍ର ରସ ୧ ଚାମଚ ପିଇବ । |
| ପ୍ରମୁଖ ଔଷଧି | ଶୋଭାଞ୍ଜନାଦିଲେପ, ଶ୍ୟାମାଦିଚୂର୍ଣ୍ଣ । |



Digitized by srujanika@gmail.com

# ସୁନାରି

## CASSIA FISTULA (CAESALPINIACEAE)

ସଂସ୍କୃତ ନାମ : ଆରଗ୍ୱଧ, ରାଜବୃକ୍ଷ ; ହିନ୍ଦୀ : ଅମଲତାସ ;

ଇଂରାଜୀ Purging Cassia.

| | |
|---|---|
| ଉପ୍ତିସ୍ଥଳ | ରାସ୍ତାକଡ଼, ଜଙ୍ଗଲ ଆଦି ସ୍ଥାନରେ ଆପେ ଆପେ ଉଠିଥାଏ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ବୃକ୍ଷ, ୨୫ ରୁ ୩୦ ଫୁଟ ଉଚ୍ଚତା ବିଶିଷ୍ଟ । କାଣ୍ଡ-ଧୂସରବର୍ଣ୍ଣ । ପତ୍ର: ୧ ଫୁଟ ଲମ୍ବା, ଅଣ୍ଡାକାର । ମାଘ, ଫାଲ୍‌ଗୁନ୍ ମାସରେ ପତ୍ର ଝଡ଼ିଯାଏ । ଫୁଲ: ହଳଦିଆରଙ୍ଗ, ୧୦ ରୁ ୨୦ ଇଞ୍ଚ ପର୍ଯ୍ୟନ୍ତ ଲମ୍ବା, ୫ ପାଖୁଡ଼ାଯୁକ୍ତ, ଅତି ସୁନ୍ଦର, ଚୈତ୍ରରୁ ବୈଶାଖ ମାସ ଶେଷ ପର୍ଯ୍ୟନ୍ତ ଗଛରେ ରହିଥାଏ । ଫଳ: ୧.୫ ଫୁଟ ଲମ୍ବା ଓ ୧''ଇଞ୍ଚ ଚଉଡ଼ା, କଠିନ, କଞ୍ଚାବସ୍ଥାରେ ସବୁଜ ଓ ପକ୍ୱାବସ୍ଥାରେ କୃଷ୍ଣବର୍ଣ୍ଣ, ଫୁଲଝଡ଼ିଗଲାପରେ ଫଳ ଗଛରେ ଓହଳି ବହୁଦିନ ରହିଥାଏ । |
| ପ୍ରଧାନ ଗୁଣ କର୍ମ | ଗୁରୁ, ମଧୁର, ଶୀତଳ, ମୃଦୁବିରେଚକ ଓ କୋଷ୍ଠ ଶୁଦ୍ଧିକର । ଏହା ବିଶେଷତଃ ପେଟ ରୋଗରେ ପ୍ରୟୋଗ କରାଯାଇଥାଏ । |
| ଔଷଧୀୟ ଉପଯୋଗୀ ଅଂଶ | ଫଳମଜ୍ଜା,ମୂଳଛାଲି, ଫୁଲ, ପତ୍ର |
| ଔଷଧୀୟ ମାତ୍ରା | ଫଳମଜ୍ଜା ୫-୧୦ ଗ୍ରାମ୍ । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. କୋଷ୍ଠକାଠିନ୍ୟ | ଉଷୁମ ଗୋଦୁଗ୍ଧ ୧ କପ୍ କିମ୍ବା କିସମିସ୍ (୧୫ ଟି) ସହିତ ସୁନାରି ଫଳର ଅଠା (ମଜ୍ଜା) ୫ ଗ୍ରାମ୍ ଉଷୁମ ପାଣି ଅଧ ଗ୍ଲାସ୍‌ରେ ପକାଇ ପିଇବ । |

Digitized by srujanika@gmail.com

୨. ଆମବାତରେ : ସୁନାରିପତ୍ର ୩ଟି ସୋରିଷ ତେଲରେ ଭାଜି ସଂନ୍ଧ୍ୟା ସମୟରେ ସେବନ କଲେ ଆମଦୋଷ ଦୂର ହୋଇଥାଏ ।

୩. ଅଣ୍ଡକୋଷ ବୃଦ୍ଧି ସୁନାରି ଫଳ ମଜ୍ଜା ୧୫ ଗ୍ରାମ୍‌କୁ ୧୦୦ ମି.ଲି. ପାଣିରେ ଫୁଟାଇ ଅବଶେଷ ୨୫ ମି.ଲି. ରେ ୩୦ ଗ୍ରାମ୍ ଗାଈଘିଅ ମିଶାଇ ପ୍ରତିଦିନ ୨ ଥର କରି ପିଇବ ।

୪. ବାନ୍ତିକରାଇବା ପାଇଁ ଏହାର ୫-୭ ଟି ମଞ୍ଜି ଚୂର୍ଣ୍ଣ କରି ସେବନ କରିବାକୁ ଦେଇ ପର୍ଯ୍ୟାପ୍ତ ମାତ୍ରାରେ ପାଣି ପିଇବାକୁ ଦେବ ।

୫. ଟନସିଲ୍ ବା ଘଣ୍ଟିକା ବୃଦ୍ଧି : ଏହାର ମୂଳଛାଲିକୁ ସିଝାଇ ଉଷୁମ ଅବସ୍ଥାରେ କୁଳି କରିବ ।

୬. କଙ୍କଡ଼ାବିଛା ଦଂଶନରେ : ଏହାର ମଞ୍ଜିକୁ ପାଣିରେ ଘୋରି ଦଂଶନ ସ୍ଥାନରେ ଲଗାଇବ ।

୭. ହରପିସ୍ ବା ଅଗ୍ନିବିସର୍ପରେ : ଏହାର ପତ୍ରକୁ ବାଟି ଘିଅ ମିଶାଇ ଲେପ କରିବ ।

୮. କିଟ୍ଟିଭ ; ସଦ୍ୟବ୍ରଣ (ଘା') : ଏହାର ପତ୍ରକୁ ସ୍ତ୍ରୀଦୁଗ୍ଧରେ ବାଟି ସ୍ଥାନିକ ଲେପ କରିବ ।

ପ୍ରମୁଖ ଯୋଗ : ଆରଗ୍‌ବଧାଦି ଫାଣ୍ଟ, ପଥ୍ୟାଦିକ୍ୱାଥ, ରସ୍ନାସପ୍ତକ କ୍ୱାଥ ।



Digitized by srujanika@gmail.com

# ହରିଡ଼ା

## TERMINALIA CHEBULA (COMBRETACEAE)

ସଂସ୍କୃତ ନାମ: ଅଭୟା, ପଥ୍ୟା, ହରିତକୀ ; ହିନ୍ଦୀ: ହରଡ଼ ;

ଇଂରାଜୀ : Chebulic Myrobalan.

| | |
|---|---|
| ଉପ୍ତତ୍ତିସ୍ଥଳ | ଓଡ଼ିଶାର ଜଙ୍ଗଲ ଓ ଔଷଧି ବଗିଚାମାନଙ୍କରେ ଦେଖିବାକୁ ମିଳେ । |
| ବନସ୍ପତି ବର୍ଣ୍ଣନା | ଏହା ଏକ ମଧ୍ୟମାକାର ବୃକ୍ଷ । ଛାଲି: କଳା ଓ ଧୂସରବର୍ଣ୍ଣଯୁକ୍ତ, କାଣ୍ଡ : ଶକ୍ତ, ପତ୍ର:ବାସଙ୍ଗପତ୍ର ପରି ଚଉଡ଼ା ଏବଂ ମହୁଲ ପତ୍ର ପରି, ୪''-୮'' ଲମ୍ବା, ଅଣ୍ଡାକାର, ସ୍ପର୍ଶରେ କର୍କଶ । ଫୁଲ:ଛୋଟ, ଆମ୍ବ ଫୁଲ ପରି ଏବଂ ଧଳା ଓ ହଳଦିଆ ରଙ୍ଗ, ସାମାନ୍ୟ ଦୁର୍ଗନ୍ଧଯୁକ୍ତ । ଫଳ: ସାମାନ୍ୟ ଲମ୍ବାଯୁକ୍ତ, ଗୋଲାକାର, ଶୁଖିଲେ କଳା, ବାଇଗଣି ଓ ଲାଲ୍, ପାଞ୍ଚରେଖାଯୁକ୍ତ ଦେଖାଯାଏ । ଭେଦରେ ଅନେକ ପ୍ରକାର ଦେଖାଯାଏ । |
| ପ୍ରଧାନ ଗୁଣ କର୍ମ | ଉଷ୍ଣ, ମୃଦୁବିରେଚକ, ଅନୁଲୋମନ, ଦୀପନ, ରସାୟନ ଓ ତ୍ରିଦୋଷଘ୍ନ । |
| ଔଷଧୀୟ ଉପଯୋଗୀ ଅଂଶ | ଫଳ |
| ମାତ୍ରା | ଚୂର୍ଣ୍ଣ ୩-୬ ଗ୍ରାମ୍ । |

## ଔଷଧୀୟ ବ୍ୟବହାର

| | |
|---|---|
| ୧. ଅର୍ଶ | ଖାଇବା ପୂର୍ବରୁ ନିୟମିତ ହରିଡ଼ାଚୂର୍ଣ୍ଣ ୫ ଗ୍ରାମ୍ ଓ ଗୁଡ଼ ଅଧା ଚାମଚ ମିଶାଇ ସେବନ କରିବ । |

Digitized by srujanika@gmail.com

୨. ରକ୍ତହୀନତା : ଗୋମୂତ୍ରରେ ହରିଦ୍ରାକୁ ବତୁରାଇ ଶୁଖାଇବା ପରେ ଚୂର୍ଣ୍ଣ କରି ୩ ଗ୍ରାମ୍ ମାତ୍ରାରେ ନିୟମିତ ସେବନ କରିବ ଓ ଥଣ୍ଡାପାଣି ପିଇବ ।

୩. ବାନ୍ତି : ହରିଦ୍ରାଚୂର୍ଣ୍ଣ ୨ ଗ୍ରାମ୍ ଓ ମହୁ ମିଶାଇ ସେବନ କରିବ ।

୪. ରସାୟନ କର୍ମ : ରାତ୍ରରେ ଏକ ଲୌହପାତ୍ରରେ ହରିଦ୍ରାଚୂର୍ଣ୍ଣ ୫ ଗ୍ରାମ୍‌ରେ ମହୁ ୫ ଗ୍ରାମ୍ ମିଶାଇ ଘୋଡ଼ାଇ ରଖିବ । ପରଦିନ ସକାଳୁ ମହୁ ଅଧ ଚାମଚ ଓ ଘିଅ ୧ ଚାମଚ ମିଶାଇ ସେବନ କରିବ । ଏହିପରି ନିୟମିତ ସେବନ କରିବ । ସୈନ୍ଧବଲୁଣ, ଚିନି,ଶୁଣ୍ଠି, ପିପ୍ପଳୀ, ମଧୁ ଓ ଗୁଡ଼ ସହ ହରିଦ୍ରାକୁ ଯଥାକ୍ରମେ ବର୍ଷା, ଶରତ, ହେମନ୍ତ, ଶୀତ, ବସନ୍ତ ଓ ଗ୍ରୀଷ୍ମ ଋତୁରେ ସେବନ କରିବ ।

୫. ରକ୍ତପିତ୍ତ ଦ୍ରାକ୍ଷା ଓ ହରିଦ୍ରା ପ୍ରତ୍ୟେକ ୫ ଗ୍ରାମ୍ ନେଇ ଏକତ୍ର ମିଶାଇ ନିୟମିତ ସେବନ କରିବ ।

୬. ଅଣ୍ଡକୋଷବୃଦ୍ଧି ୭ ଦିନ ପର୍ଯ୍ୟନ୍ତ ହରିଦ୍ରାକୁ ଗୋମୂତ୍ରରେ ବୁଡ଼ାଇ ରଖିବ । ପ୍ରତିଦିନ ଗୋମୂତ୍ର ବଦଳାଇବ । ଏହାପରେ ତାକୁ ଶୁଖାଇ ଜଡ଼ାତେଲରେ ଭାଜି ଗୁଣ୍ଡ କରି ସେଥିରୁ ୩ ଗ୍ରାମ୍ ନେଇ ସାମାନ୍ୟ ସୈନ୍ଧବଲୁଣ ସହିତ ସକାଳ ଓ ସନ୍ଧ୍ୟାରେ ଉଷୁମ ପାଣିରେ ପିଇବ ।

୭. ସନ୍ଧିବାତ : ଜଡ଼ାତେଲରେ ହରିଦ୍ରାଗୁଣ୍ଡ (୫ ଗ୍ରାମ୍) ସାମାନ୍ୟ ଭାଜି ସେବନ କରି ଉଷୁମ ପାଣି ପିଇବ ।

୮. ଅଜୀର୍ଣ୍ଣ : ଖାଇବା ପୂର୍ବରୁ ହରିଦ୍ରା ୩ ଗ୍ରାମ୍ ଓ ଶୁଣ୍ଠି ୩ ଗ୍ରାମ୍ ମିଶାଇ ପ୍ରତିଦିନ ସେବନ କରିବ ।

Digitized by srujanika@gmail.com

| | |
|---|---|
| ୯. ବ୍ରଣ | ହରିଦ୍ରାକୁ ଘୋରି ଲେପ କରିବ । |
| ୧୦. କୋଷ୍ଠକାଠିନ୍ୟ | ପ୍ରତିଦିନ ରାତ୍ରି ଶୋଇବା ବେଳେ ୧ ଚାମଚ ହରିଦ୍ରାଗୁଣ୍ଡ ଖାଇ ସାମାନ୍ୟ ଉଷୁମ ପାଣି ପିଇବ । |
| ପ୍ରମୁଖ ଔଷଧି | ଅଭୟା ମୋଦକ, ଅଭୟାରିଷ୍ଟ, ବ୍ୟାଘ୍ରୀହରିତକୀ, ତ୍ରିଫଳା ଚୂର୍ଣ୍ଣ । |



Digitized by srujanika@gmail.com

# ହଳଦୀ

## CURCUMA LONGA (ZINGIBERACEAE)

ସଂସ୍କୃତ ନାମ : ନିଶା, ହରିଦ୍ରା ; ହିନ୍ଦୀ : ହଲ୍‌ଦି ;

ଇଂରାଜୀ : Turmeric

| | |
|---|---|
| .ଉପ୍ତିସ୍ଥଳ : | ଓଡ଼ିଶାର ପ୍ରାୟ ଅଧିକାଂଶ ଅଞ୍ଚଳରେ ଚାଷ କରାଯାଏ ବିଶେଷତଃ କନ୍ଧମାଳ ଅଞ୍ଚଳ । |
| ବନସ୍ପତି ବର୍ଣ୍ଣନା | ଏହା ୨-୩' ଫୁଟ ଉଚ୍ଚତା ବିଶିଷ୍ଟ ବନସ୍ପତି ଅଟେ । ପତ୍ର: କଦଳୀଗଛର ପତ୍ର ପରି ଏବଂ ଛୋଟ, ପ୍ରାୟ ୧ ଫୁଟ ଲମ୍ବା ଏବଂ୬-୭ ଇଞ୍ଚ ଚୌଡ଼ା, ପତ୍ରକୁ ମକଚି ଦେଲେ ଆମ୍ବ ପରି ସୁଗନ୍ଧ ଆସିଥାଏ । ଫୁଲ: ୧୦-୧୫ ସେ.ମି ଲମ୍ବା ଓ ହଳଦିଆ ବର୍ଣ୍ଣ । କନ୍ଦ: ମାଟି ତଳେ ଅଦାଠାରୁ ବଡ଼ କନ୍ଦ ହଳଦିଆ ବର୍ଣ୍ଣର ହୋଇଥାଏ । |
| ପ୍ରଧାନ ଗୁଣ କର୍ମ | କଫପିତ୍ତ ନାଶକ, କାନ୍ତି ବୃଦ୍ଧିକର, ଚର୍ମରୋଗ, ପ୍ରମେହ, ରକ୍ତଦୋଷ ଓ ବ୍ରଣ ନାଶକ । |
| ଔଷଧୀୟ ଉପଯୋଗୀ ଅଂଶ | କନ୍ଦ |
| ମାତ୍ରା | ସ୍ୱରସ: ୧୦-୨୦ ମି.ଲି., ଚୂର୍ଣ୍ଣ ୧-୩ ଗ୍ରାମ୍ । |

### ଔଷଧୀୟ ବ୍ୟବହାର

| | |
|---|---|
| ୧. ପ୍ରମେହ | ୧୪-୨୮ ମି.ଲି. କଞ୍ଚା ହଳଦୀରସ ଏବଂ ସମାନ ମାତ୍ରାରେ ଅଁଳାଫଳରସ ମିଶାଇ ଦିନରେ ୩ ଥର ସେବନ କରିବ । |
| ୨. ଦାନ୍ତବିନ୍ଧା | ଶୁଖିଲା ହଳଦୀକୁ ପୋଡ଼ି, ଗୁଣ୍ଡକରି ସେଥିରେ ଦାନ୍ତ ଘଷିଲେ ଦାନ୍ତବିନ୍ଧାରୁ ଉପଶମ ମିଳେ । |

Digitized by srujanika@gmail.com

୩. ଶ୍ଲୀପଦ — ୧-୩ ଗ୍ରାମ୍ ଏହାର କନ୍ଦଚୂର୍ଣ୍ଣ ଗୋମୂତ୍ର ସହିତ ମିଶାଇ ଦିନକୁ ୨ ଥର ସେବନ କରିବ ।

୪. କାନ ପାଚିଲେ — ୧ ଭାଗ ହଳଦୀ ରସରେ ୪ ଭାଗ ସୋରିଷ ତେଲ ଗରମ କରି ୨-୪ ବିନ୍ଦୁ ମାତ୍ରାରେ କାନରେ ପକାଇବ ।

୫. ତୃଷା : ହଳଦୀକୁ ବାଟି ୫ ଗ୍ରାମ୍ ନେଇ ମହୁ ଓ ଚିନି ମିଶାଇ ସରବତ ପରି ପିଇବ ।

୬. ପେଟବ୍ୟଥା — ହଳଦୀ ୧୦ ଗ୍ରାମ୍ ସହିତ ସମପରିମାଣ ଜୁଆଣୀ ଓ ଲୁଣ (୨-୫ ଗ୍ରାମ୍) ଚୂର୍ଣ୍ଣ କରି ୪୦ ଗ୍ରାମ୍ ଘିଅରେ ଭାଜି ରଖିବେ ଏବଂ ୧/୩ ଗ୍ରାମ୍ ଲେଖାଏଁ ଦିନକୁ ୨ ଥର କରି ଉଷୁମ ପାଣିରେ ସେବନ କରିବ ।

୭. ଶୁଖିଲା କାଶ — ହଳଦୀଗୁଣ୍ଡ ୫ ଗ୍ରାମ୍, ବାସଙ୍ଗରସ ୧ ଚାମଚ ଏବଂ ୧ ଚାମଚ ଲହୁଣୀ ମିଶାଇ ଦିନକୁ ୨ ଥର ସେବନ କରିବ ।

ପ୍ରମୁଖ ଔଷଧି — ହରିଦ୍ରାଖଣ୍ଡ

❋ ❋ ❋

Digitized by srujanika@gmail.com

## ୧. ଥଣ୍ଡାଜ୍ୱର

୧. ତୁଳସୀପତ୍ର ରସ ୧ ଚାମଚ, ଅଦାରସ ୧ ଚାମଚ ଏବଂ ସୈନ୍ଧବଲୁଣ ୧ ଟିପ ଏକତ୍ର ମିଶାଇ ଦିନକୁ ୨ ରୁ ୩ ଥର ଖାଲି ପେଟରେ ଖାଇବ ।

୨. ଅଙ୍କରାନ୍ତି(ସର୍ବାଙ୍ଗ), ଚିରେଇତା କିମ୍ବା ଭୂଇଁନିମ୍ବ, ଶୁଣ୍ଠି, ଗୁଳୁଚି ପ୍ରତ୍ୟେକ ୧୦ ଗ୍ରାମ୍ ନେଇ ୪ କପ୍ ପାଣିରେ ସିଝାଇ ୧ କପ୍ ରଖିବ ସେଥିରୁ ଅଧକପ୍ ଦିନକୁ ୨ ଥର ଖାଲି ପେଟରେ ପିଇବ ।

୩. ଧନିଆଁ, ପୋଟଳପତ୍ର ପ୍ରତ୍ୟେକ ୧୦ ଗ୍ରାମ୍ ନେଇ ଦୁଇ କପ୍ ପାଣିରେ ସିଝାଇ ଏକ କପ୍ ରଖିବ । ଅଧକପ୍ ୨ ଥର ପିଇବ ।

## ୨. ବିଷମଜ୍ୱର (କମ୍ପଜ୍ୱର)

୧. କଞ୍ଚାଗୁଳୁଚି ଛେଚି ରସ ବାହାର କରିବ । ୧ ଚାମଚ ଗୁଳୁଚି ରସ ଅଧ ଚାମଚ ମହୁ ସହିତ ଦିନକୁ ୨ ରୁ ୩ ଥର ଖାଲି ପେଟରେ ସେବନ କରିବ ।

୨. ପିପ୍ପଳୀଚୂର୍ଣ୍ଣ ୨ ଟିପ, ୧ ଚାମଚ ପୁରୁଣା ଗୁଡ଼ରେ ମିଶାଇ ଦିନକୁ ୨ରୁ ୩ ଥର ସେବନ କରିବ ।

୩. ଶେଫାଳି (ଗଙ୍ଗଶିଉଳି) ପତ୍ର ସ୍ୱରସ ୧ ଚାମଚ, ମହୁ ଅଧ ଚାମଚ ମିଶାଇ ଦିନକୁ ୨ ଥର ସେବନ କରିବ ।

୪. ଗୁଳୁଚି ସ୍ୱରସ ୨୦ ମି.ଲି. ସହିତ ପିପ୍ପଳୀ ଚୂର୍ଣ୍ଣ ୫୦୦ ମି.ଗ୍ରା. ଏବଂ ୧୦ ମି.ଲି. ମହୁ ମିଶାଇଦିନକୁ ୩ ଥର ସେବନ କରିବ ।

## ୩. ତରଳଝାଡ଼ା

୧. ୫ ଗ୍ରାମ୍ ଜୀରାକୁ ଦହିରେ ବାଟି ଦିନକୁ ୩ ଥର ପିଇବ ।

୨. ଭାତର ପେଜ ଦିନକୁ ୨ରୁ ୩ ଥର ପିଇବ ।

୩. ପାନମଧୁରୀକୁ ଅଳ୍ପ ଭାଜି ଗୁଣ୍ଡ କରିବ । ସେଥିରେ ସମାନ ପରିମାଣର ଚିନି ମିଶାଇ ୧୦ ଗ୍ରାମ୍ ହିସାବରେ ଦିନ ମଧ୍ୟରେ ୪-୫ ଥର ଖାଇବ ।

୪. ମୁଥା ଏବଂ ପିତପାପଡ଼ା ପ୍ରତ୍ୟେକ ୧୦ ଗ୍ରାମ୍ ଲେଖାଏଁ ନେଇ ୬ କପ୍ (୩୦୦ ମି.ଲି.) ଜଳରେ ସିଝାଇ ନେଇ ୩ କପ୍ (୧୫୦ ମି.ଲି.) ରଖିବ । ତରଳଝାଡ଼ାରେ ଶୋଷ କମାଇବା ପାଇଁ ବାରମ୍ବାର ପିଇବ ।

Digitized by srujanika@gmail.com

୫. ୧ ରୁ ୨ ଗ୍ରାମ୍ ଜାଇଫଳ ପାଣିରେ ବାଟି ଦିନକୁ ୩-୪ ଥର ଖାଇବାକୁ ଦେବ । ଏହା ସହିତ ଅଧାଚାମଚ ଭଜାଜିରା ଗୁଣ୍ଡ ଖାଇବାକୁ ଦେଲେ ସୁଫଳ ମିଳେ ।

୬. ହେମକେଦାର ପତ୍ର ରସ ୧ ରୁ ୨ ଚାମଚ ସହିତ ୫-୭ ଟି ଗୋଲମରିଚ ବାଟି ଦିନକୁ ୨ରୁ ୩ ଥର ପିଆଇବ ।

## ୪. ନାଲଝାଡ଼ା

୧. ଶାଳପର୍ଣ୍ଣି, ପିତାକେରୁଆଁ ମଞ୍ଜି, କଞ୍ଚାବେଲମଞ୍ଜା ଓ ମୁଥା ପ୍ରତ୍ୟେକ ୧୫ ଗ୍ରାମ୍ ନେଇ ୪ କପ୍ (୨୦୦ ମି.ଲି.) ପାଣିରେ ସିଝାଇ ଅବଶେଷ ୧ କପ୍ (୫୦ ମି.ଲି.) ରଖିବ । ସେଥିରୁ ଅଧାକପ୍ ଲେଖା ଦିନକୁ ୨ ଥର ପିଇବ ।

୨. କଇଁଥ ଫଳ, ବେଲଶୁଣ୍ଠା, ଝୁଆଣି ପ୍ରତ୍ୟେକ ସମାନ ଭାଗ ନେଇ ଗୁଣ୍ଡ କରି ଥରକୁ ୧ ରୁ ୨ ଚାମଚ ଦିନକୁ ୨ ରୁ ୩ ଥର ଖାଇବ ।

## ୫. ରକ୍ତଝାଡ଼ା

୧. ପିତାକେରୁଆଁ (କୁଟଜ) ଛାଲି ୮୦ ଗ୍ରାମ୍ ୪ କପ୍ ପାଣିରେ ସିଝାଇ ୨ କପ୍ ରଖି ସେଥିରୁ ଅଧକପ୍ ଲେଖାଏଁ ଦିନକୁ ୩-୪ ଥର ପିଇବ ।

୨. ପିଚ୍ଛୁଳିଗଛ ପତ୍ର (କଅଁଳିଆ ପତ୍ର) ୧୦ ଗ୍ରାମ୍ ସହ ୩ ଗ୍ରାମ୍ ଅଦାବାଟି ପାଞ୍ଚଭାଗ କରି ପ୍ରତି ୧୫ ମିନିଟ୍‌ରେ ଏକ ଭାଗ ଥଣ୍ଡାପାଣି ସହିତ ଖାଇବ ।

## ୬. ଅଣ୍ଡାବିନ୍ଧା (ଅଣ୍ଡାଦରଜ)

୧. ୧ରୁ ୨ ଚାମଚ ବିରିଚୂନାରେ ୧ ରୁ ୨ ଟିପ ଲୁଣ ମିଶାଇ ରାଶି ତେଲରେ ଭାଜି ଦିନକୁ ୨ ଥର ୩-୪ ଦିନ ଖାଇବାକୁ ଦେବ ।

୨. ଗୋଟିଏ ବାଇଗଣ ନିଆଁରେ ପୋଡ଼ି ୧ ରୁ ୨ ଚାମଚ ଜଡ଼ାତେଲ ମିଶାଇ ଦରକାର ଅନୁଯାୟୀ ଲୁଣ ସହ ରାତ୍ରୀଭୋଜନ ସହିତ ସେବନ କରିବ ।

୩. ବେଗୁନିଆ ପତ୍ର ୧୦-୧୨ ଗୋଟି, ରସୁଣ ୩-୪ ପାଖୁଡ଼ା, ଶୁଣ୍ଠି ୫ ଗ୍ରାମ୍, ୪ କପ୍ ପାଣିରେ ସିଝାଇ ୧ କପ୍ ରଖିବ ସେଥିରୁ ଅଧାକପ୍ ଦିନକୁ ୨ ଥର ପିଇବ ।

Digitized by srujanika@gmail.com

## ୭. ଆଣ୍ଠୁଗଣ୍ଠିବାତ

୧. ଗବ ମଂଜି ପାଣିରେ ବାଟି ଅଳ୍ପ ଗରମ କରି ଗଣ୍ଠିର ଦରଜ ଜାଗାରେ ଲେପ କରିବ ।

୨. ଲଙ୍କା ମରିଚକୁ ରାଶିତେଲରେ ଫୁଟାଇ ଏହି ତେଲକୁ ଆଣ୍ଠୁରେ ମାଲିସ୍ କରିବ ।

୩. କୋଳଥ ଡ଼ାଲିର ପାଣି ପ୍ରତିଦିନ ପିଇଲେ ଆଣ୍ଠୁଗଣ୍ଠି ଦରଜ କମିଯାଏ ।

୪. ପରିଷ୍କାର କିରୋସିନ୍ ତେ଼ଲ ଆଣ୍ଠୁଗଣ୍ଠି ଦରଜ ସ୍ଥାନରେ ମାଲିସ୍ କରିବ ।

୫. ଏକ ମଟର ମଂଜି ପରିମାଣ ଅଫିମ ନେଇ ୩-୪ ଚାମଚ ପାଣିରେ ଚକଟି ୫୦ ମି.ଲି. ସୋରିଷ ତେଲରେ ମିଶାଇ ଗରମ କରିବ । ପାଣି ମରିଗଲା ପରେ ଏହି ତୈଳ ଆଣି ଦରଜ ହୋଇଥିବା ଗଣ୍ଠିରେ ୧୦ ମି.ଲି. ଦିନକୁ ୨ ଥର ମାଲିସ୍ କରିବ ।

## ୮. ପେଟଫମ୍ପା

୧. ଏକ ଟିପ ଭଜା ହିଙ୍ଗୁ, ଏକ ଚାମଚ ଗୁଡ଼ ମିଶାଇ ଦିନକୁ ୩ ଥର ଖାଇବ ।

୨. ହିଙ୍ଗୁ ଓ ଶୁଣ୍ଠିବାଟି ପେଟରେ ବୋଳିଲେ ପେଟଫମ୍ପାରୁ ଆରାମ ମିଳେ ।

୩. ଭଜା ହିଙ୍ଗୁ, ଭଜାଜୀରା, ଶୁଣ୍ଠି ଓ ସୈନ୍ଧବଲୁଣ ଏ ସବୁକୁ ସମାନ ଭାଗରେ ଚୂର୍ଣ୍ଣ କରି ଏଥିରୁ ୨ ଟିପ ଲେଖାଏଁ ଦିନକୁ ୨-୩ ଥର ସେବନ କରିବ ।

## ୯. ଅଜୀର୍ଣ୍ଣ

୧. ସୈନ୍ଧବ ଲବଣ ଅଢ଼େଇ ଗ୍ରାମ୍, ଗରମ ଜଳ ସହିତ ସେବନ କରାଯାଏ ।

୨. ତାଳପତ୍ର ଛେଚି ତାର ରସ (୧ ଚାମଚ) ବାହାର କରି ମହୁ ମିଶାଇ ଖାଇବାକୁ ଦେବ ।

୩. ସୈନ୍ଧବ ଲବଣ ଏକ ଟିପ, ଗୋଲମରିଚଗୁଣ୍ଡ ଏକ ଟିପ ଓ ଭଜା ଜୀରା ଗୁଣ୍ଡ ଏକ ଟିପ ଅଧାକପ୍ ଦହି ସହିତ ମିଶାଇ ପିଇବ ।

୪. ଅଜୀର୍ଣ୍ଣ ରୋଗରେ ସିଝାପାଣି ପ୍ରଚୁର ପିଇବାକୁ ଦେବ ।

## ୧୦. ଅର୍ଶ

୧. ଓଲୁଅ ଶୁଖାଇ ଗୁଣ୍ଡ କରିବ । ସେଥିରୁ ୫ ଗ୍ରାମ୍ ନେଇ ୧ ଚାମଚ ଲହୁଣୀ ଓ ୧ ଚାମଚ ମିଶ୍ରି ଗୁଣ୍ଡ ସହ ସେବନ କରିବ ।

Digitized by srujanika@gmail.com

୨. ଅର୍ଶରେ ରକ୍ତ ପଡ଼ିବା ବନ୍ଦ କରିବା ପାଇଁ ଧଳା ପିଆଜ ୩୦ ଗ୍ରାମ୍ ଆଣି ବାଟି ୫୦୦ ମି.ଲି. ପାଣିରେ ମିଶାଇବ । ଏଥିରେ ୫୦ ଗ୍ରାମ୍ ମିଶ୍ରୀ ମିଶାଇ ପ୍ରତିଦିନ ଦୁଇଥର ୪-୫ ଦିନ ପିଇବାକୁ ଦେବ ।

୩. ଚନ୍ଦ୍ରଦହି ୧ କପ୍‌ରେ ସୈନ୍ଧବ ଲବଣ ଏକ ଟିପ ମିଶାଇ ଦିନକୁ ୨ ଥର ସେବନ କରିବ ।

## ୧୧. ପେଟବ୍ୟଥା

୧. ପିଆଜକୁ ନିଆଁରେ ଅଳ୍ପ ପୋଡ଼ି ତାକୁ ବାଟି ରସ ବାହାର କରିବ । ଏଥିରେ ଅଳ୍ପ ପାଣି ଓ ଲୁଣ ମିଶାଇ ପିଇବ ।

୨. ପାନପତ୍ରରୁ ରସ ୨ ଚାମଚ ବାହାର କରି ମହୁ ମିଶାଇ ପିଇବ ।

୩. କଉଡ଼ି ଭସ୍ମ କିମ୍ବା ଶଙ୍ଖଭସ୍ମ ୨୫୦ ମି.ଗ୍ରା ପରିମାଣରେ ଲେମ୍ବୁରସ ସହିତ ଖାଇବାକୁ ଦେବ ।

୪. ଖାଦ୍ୟ ଖାଇବା ପୂର୍ବରୁ ଲୁଣ ଓ ଅଦା ଏକତ୍ର ଖାଇ ଅଳ୍ପ ପାଣି ପିଇବ ।

## ୧୨. ଅଧକପାଳି

୧. ପଇଡ଼ପାଣିରେ ଚିନି ମିଶାଇ ନାକରେ ପକାଇଲେ ଅଧକପାଳି ବ୍ୟଥା ଶାନ୍ତ ହୁଏ ।

୨. ରସୁଣକୁ ବାଟି କପାଳରେ ଲଗାଇବ ।

୩. ରାଶିକୁ ଛେଳି କ୍ଷୀରରେ ବାଟି କପାଳରେ ଲେପ ଦେବ ।

୪. ଏକ ଗ୍ଲାସ କ୍ଷୀର, ମିଶ୍ରି ୧୦ ଗ୍ରାମ୍ ସହିତ ୪-୫ ଗୋଟି ବାଦାମ ମଂଜି ମିଶାଇ ପ୍ରତିଦିନ ୨ ଥର ସେବନ କରିବ ।

୫. ୨ ଚାମଚ ଗୁଡ଼ ଓ ୧ ଚାମଚ ଘିଅ ଏକାଠି ମିଶାଇ ଖାଇବାକୁ ଦେବ ।

## ୧୩. ପୋଡ଼ା ଘା’

୧. ଗହମ ଅଟାରେ ପାଣି ମିଶାଇ ଚକଟି ଏହାକୁ ବହଳିଆ କରି ପୋଡ଼ିଯାଇଥିବା ସ୍ଥାନରେ ଲେପ କରିବ ।

୨. ରାଶିକୁ ପାଣିରେ ବାଟି ଅଳ୍ପ ବହଳିଆ କରି ପୋଡ଼ା ଜାଗାରେ ଲେପ ଦେବ ।

Digitized by srujanika@gmail.com

୩. ପଙ୍କମାଟିରେ ଅଳ୍ପ ଲୁଣ ମିଶାଇ ଅଗ୍ନି ଦଗ୍ଧ ଅଙ୍ଗରେ ଲେପ ଦେଲେ ଜ୍ୱାଳା ଶାନ୍ତ ହୁଏ ।

୪. ନଡ଼ିଆତେଲରେ ଚୂନ ମିଶାଇ ଘାଣ୍ଟି ଲହୁଣୀ ପରି କରିବ ଓ ପୋଡ଼ା ଘା'ରେ ଲଗାଇବ ।

## ୧୪. ଆଖିଧରା

୧. ଅଁଳାକୋଳିର ରସ ଆଖିରେ ୧-୨ ଟୋପା ଦିନକୁ ୨-୩ ଥର ପକାଇବ ।

୨. ଛୋଟ ପିଆଜରସ ଆଖିରେ ଏକ ଦୁଇଟୋପା ପକାଇବ ।

୩. କଳା ତୁଳସୀପତ୍ର ରସ ୨ ଟୋପା ଆଖିରେ ପକାଇବ ।

୪. ସଜନାପତ୍ର (କୋମଳ) ରସ ୧ ଟୋପା ଆଖିରେ ପକାଇବ ।

## ୧୫. ଦାନ୍ତବିନ୍ଧା

୧. ବରଗଛ କ୍ଷୀର ଦାନ୍ତମୂଳରେ ଲଗାଇଲେ ଦାନ୍ତବିନ୍ଧା ଭଲ ହୁଏ ।

୨. ହରଡ଼ ପତ୍ର ସିଝାଇ ତାର ପାଣି କୁଳୁକୁଞ୍ଚା (ଦିନକୁ ୩-୪ ଥର) କରିବ ।

## ୧୬.କାଶଶ୍ୱାସ

୧. ବାସଙ୍ଗପତ୍ର ୨-୩ଟି, ଅଦା ୫ ଗ୍ରାମ୍, ତୁଳସୀପତ୍ର ୧୦ ଟି ଓ ମିଶ୍ରି ୨୦ ଗ୍ରାମ୍ ଚାରିକପ୍ ପାଣିରେ ସିଝାଇ ଦୁଇ କପ୍ ରଖିବ, ସକାଳେ ଏକ କପ୍ ଓ ସଂନ୍ଧ୍ୟାରେ ଏକ କପ୍ ପିଇବ ।

୨. ଦଶଗ୍ରାମ୍ ଗହମ ଅଟା, ୨ ଗ୍ରାମ୍ ସୈନ୍ଧବ ଲବଣ ଚାରିକପ୍ ପାଣିରେ ସିଝାଇ ଅବଶିଷ୍ଟ ଏକକପ୍ ରଖି ଦିନକୁ ୨-୩ ଥର ପିଇଲେ ଶୁଷ୍କ କାଶରେ ଉପକାର ହୁଏ ।

୩. କୋଳଥ ଭାଜି ଗୁଣ୍ଡ କରି ମହୁ ସହିତ ସେବନ କରିବ ।

୪. ପୁରୁଣା ଗୁଡ଼ ଓ ସୋରିଷ ତେଲ ସମାନ ପରିମାଣରେ ମିଶାଇ ୧ ରୁ ୨ ଚାମଚ ଦିନକୁ ୨ ଥର କରି କିଛି ଦିନ ଖାଇବାକୁ ଦେବ ।

## ୧୭. କାମଳ।

୧. ୫୦ ମି.ଲି. ଗାଈମୂତ୍ରକୁ ଛାଣି ଅଧ ଚାମଚ ହଳଦୀ ଗୁଣ୍ଡ ମିଶାଇ ଦିନକୁ ୨ ଥର ୧୦-୧୫ ଦିନ ଦେବ ।

Digitized by srujanika@gmail.com

୨. ନିମପତ୍ର ସ୍ୱରସ ୨ ଚାମଚ ସହିତ ୧ ଚାମଚ ମହୁ ମିଶାଇ ଦିନକୁ ଥରେ ଖାଲି ପେଟରେ ସକାଳେ ଦେବ ।

୩. ଗୁଳୁଚି ରସ ୧ ଚାମଚ ସହ ୨ ଚାମଚ ମହୁ ମିଶାଇ ଦିଆଯାଏ ।

୪. ତ୍ରିଫଳା ପାଣି ଅଧାକପ୍ ସହ ମହୁ ୨ ଚାମଚ ମିଶାଇ ପ୍ରତିଦିନ ସକାଳେ ପିଇବ ।

୫. ମଞ୍ଜୁଆତି ଚେର (୫ ଗ୍ରାମ୍) ଓ ଚାଉଳଧୂଆପାଣି (୧କପ୍) ଏକତ୍ର ବାଟି ଦିନକୁ ୨ ଥର ପିଇବାକୁ ଦେବ ।

## ୧୮. କାଛୁକୁଣ୍ଡିଆ

୧. ନଡ଼ିଆ ସଢ଼େଇକୁ ନିଆଁରେ ଜାଳି ତା ଉପରେ ଗୋଟିଏ କଂସା ପିତଳ ପାତ୍ର ଘୋଡ଼ାଇବ କି ନିଆଁ ଲିଭିଯିବା ପରେ ପାତ୍ର ଭିତରେ ଲାଗିଥିବା ଝାଳ କାଛୁ କୁଣ୍ଡିଆରେ ଲଗାଇବ ।

୨. ସୋରିଷ ତେଲରେ ରସୁଣ ବାଟି ନିଆଁରେ ଫୁଟାଇବ ଏବଂ ଦେହରେ ଲଗାଇବ ।

୩. ନଡ଼ିଆତେଲରେ କର୍ପୁର ମିଶାଇ ଲଗାଇବ ।

## ୧୯. କାନବିନ୍ଧା

୧. ପିଆଜ ଛେଚି ତାର ରସ ୨-୩ ବୁନ୍ଦା କାନରେ ପକାଇବ ।

୨. ତୁଳସୀପତ୍ରକୁ ରାଶି ତେଲରେ ଭାଜି ସେଥିରୁ ୨ ଟୋପା କାନରେ ପକାଇବ ।

୩. ଗୋମୂତ୍ରକୁ ଛାଣି ଗରମ କରି ୨ ବୁନ୍ଦା କାନରେ ପକାଇଲେ କାନବିନ୍ଧାରୁ ଉପଶମ ମିଳେ ।

୪. ବେଗୁନିଆଁ ପତ୍ର ରସ ଉଷୁମ କରି ୨ ବୁନ୍ଦା କାନରେ ପକାଇବ ।

## ୨୦.ପାଟି ଘା'

୧. ଅଛ ଖଇର ସିଝାପାଣି ଦିନକୁ ୨-୩ ଥର କୁଳୁକୁଞ୍ଚା କରିବ ।

୨. ହରଡ଼ପତ୍ର ଚୋବାଇ କଳରେ ଜାକିବ କିମ୍ବା ହରଡ଼ ଡ଼ାଲି ବତୁରା ପାଣିରେ କୁଳୁକୁଞ୍ଚା କରିବ ।

## ୨୧. ରକ୍ତହୀନତା

୧. ଜୀବନ୍ତୀ, ପୁରୁଣୀ ଶାଗ ପ୍ରତିଦିନ ଖାଇବ ।

Digitized by srujanika@gmail.com

୨. ହରିଦ୍ରା, ପୁରୁଣା ଗୁଡ଼ ସମ ପରିମାଣରେ ମିଶାଇ ୧୦ ରୁ ୨୦ ଗ୍ରାମ୍ ପ୍ରତିଦିନ ଦୁଇଥର ସେବନ କରିବ ।

## ୨୨. ଛାତି ଜଳାପୋଡ଼ା

୧. ଭୁକୁଣା ହାତପୋଛା ପତ୍ର କିମ୍ବା ପୋଦିନାପତ୍ର ୩-୪ଟି ଗୋଲମରିଚ ସହ ବାଟି ଖାଇବ ।

୨. ଅଁଳାକୁ ପାଣିରେ ସିଝାଇ ଅଧକପ୍ ପାଣି ପିଇବ ।

୩. ପୋଟଳପତ୍ର, ଧନିଆ, ଗୁଳୁଚି ୫ ଗ୍ରାମ୍ ଓ ମିଶ୍ରି ୨୦ ଗ୍ରାମ୍ ଏକତ୍ର ନେଇ ୪ କପ୍ ପାଣିରେ ସିଝାଇ ୨ କପ୍ ରଖିବ । ପ୍ରତିଦିନ ସକାଳେ ଓ ସଂନ୍ଧ୍ୟାରେ ଏକ କପ୍ ପିଇବ ।

୪. ପିପ୍ପଳୀଚୂର୍ଣ୍ଣ ଦୁଇଠିପି ମହୁରେ ମିଶାଇ ୨ଥର ଖାଇବ ।

## ୨୩. ଗୋଡ଼ଫଟା

୧. ୫୦ ଗ୍ରାମ୍ ମହମକୁ ତରଳାଇ ସେଥିରେ ୨୦ ଗ୍ରାମ୍ ଲୁଣ ମିଶାଇ ଗୋଡ଼ ଫଟାରେ ଲଗାଇବ ।

୨. ମହମ ଓ ରାଶିତେଲ ଏକାଠି ମିଶାଇ ଦେହରେ ଲଗାଇବ ।

## ୨୪. ଯାଦୁ, ଉକୁଣୀ ଓ ଚର୍ମଉକୁଣୀ

୧. ୫ ଚାମଚ ରନ୍ଧା ନଡ଼ିଆତେଲରେ ୫ ଗ୍ରାମ୍ ଖାଇବା କର୍ପୁର ଭଲଭାବେ ଗୁଣ୍ଡ କରି ମିଶାଇ ଦିନକୁ ୨ ଥର ଭଲଭାବେ ଦେହରେ ଲଗାଇବ ।

## ୨୫. ଅଂଶୁଘାତ

୧. କଦଳୀପତ୍ରରେ ପବନ କରିବ/ବିଞ୍ଚିବ ।

୨. ଚନ୍ଦନ ଭିଜା ପାଣି ଧୀରେ ଧୀରେ ପିଇବା ପାଇଁ ଦେବ ।

୩. ଓଦା ଲୁଗା ଦ୍ୱାରା ଶରୀରକୁ ଘୋଡ଼େଇ ଦେବ ।

୪. ବେଣାଚେର-୩ ଗ୍ରାମ୍, ଅଁଳା-୬ ଗ୍ରାମ୍, ଶ୍ୱେତଚନ୍ଦନ-୧୦ ଗ୍ରାମ୍, ଛୋଟ ଅଳେଇଚ ଅଧଗ୍ରାମ୍, ଖାଇବା କର୍ପୁର-୧୨୫ ମି.ଗ୍ରା, ମିଶ୍ରି-୨୦ ଗ୍ରାମ୍, ଏକତ୍ର ବାଟି ଏକ ଗ୍ଲାସ୍ (୨୫୦ ମି.ଲି.) ପାଣିରେ ଫେଣ୍ଟି ପିଇବାକୁ ଦେବ ।

Digitized by srujanika@gmail.com

୫. କୁଟଜ ମୂଳ ଛାଲି ୧୦ ଗ୍ରାମ୍, ଗାଈକ୍ଷୀର ୧୫୦ ମି.ଲି.ରେ ବାଟି ଛାଣିକରି ଦିନକୁ ୨-୩ ଥର ପିଇବ ।

୬. ପ୍ରତିଦିନ ୨ ଟି ପିଆଜ ଖାଇବ ଏବଂ ପକେଟରେ କିମ୍ବା ଅଣ୍ଟାରେ ୧ ଟି ଧଳା ପିଆଜ ରଖିବ ।

## ୨୬. ସଂଜ୍ଞାହୀନତା

୧. ସାଧାରଣ ସଂଜ୍ଞାହୀନତା ହେଲେ ପିଆଜକୁ ଛେଚି ତାର ରସ ୩-୪ ଟୋପା ନାକରେ ପକାଇଲେ ଚେତା ଫେରିଆସେ ।

୨. ଅଦାକୁ ଛେଚି କନାରେ ଛାଣି ୨-୩ ଟୋପା ପ୍ରତି ନାକ ପୁଡ଼ାରେ ପକାଇଲେ ଚେତା ଫେରି ଆସେ ।

୩. ରକ୍ତ ଦେଖି ମୂର୍ଚ୍ଛା ହୋଇଥିଲେ ଶୀତଳ କ୍ରିୟା କରାଯାଏ ।

୪. ମଦ୍ୟପାନ ଯୋଗୁଁ ମୂର୍ଚ୍ଛା ହେଲେ ବାନ୍ତି କରାଇବ ଏବଂ ଶୋଇବା ପାଇଁ ଉପଚାର କରିବ ।

## ୨୭. ରକ୍ତସ୍ରାବ

୧. କଟିଯାଇ ରକ୍ତସ୍ରାବ ହେଉଥିଲେ ମନୁଷ୍ୟ ମୂତ୍ର ଲଗାଇବ ।

୨. ଅଁଳାକୁ ଘିଅରେ ଭାଜି ଆମ୍ବିଳି ତୋରାଣିରେ ବାଟି ମସ୍ତକରେ ଲେପନ କଲେ ନାକରୁ ପଡୁଥିବା ରକ୍ତ ବନ୍ଦ ହୋଇଯାଏ ।

୩. ପିଆଜକୁ ବାଟି ଦାନ୍ତ ଘଷିଲେ ଦାନ୍ତମୂଳରୁ ବାହାରୁଥିବା ରକ୍ତ ବନ୍ଦ ହୁଏ । ୩-୪ ଟି ଛୋଟ ପିଆଜକୁ ବାଟି ମୁହଁରେ ମିଶ୍ରି ମିଶାଇ ଖାଇଲେ ଅର୍ଶରୁ ରକ୍ତସ୍ରାବ ବନ୍ଦ ହୁଏ ।

୪. ପତଳାମଳ ସହିତ ରକ୍ତ ପଡୁଥିଲେ ଅଳ୍ପ ଭଜା ଚାଉଳ ଚହ୍ଲା ସହିତ ରାନ୍ଧି ଖାଇବାକୁ ଦେବ ।



Digitized by srujanika@gmail.com

## ଜନ ମାନସରେ ଆୟୁର୍ବେଦ ଗୀତି (ଢଗ)

*ବହୁଦିନରୁ ଲୋକମାନଙ୍କର ତୁଣ୍ଡରେ ବହୁକଥା ଶୁଣାଯାଏ । ଯାହା ଅତ୍ୟନ୍ତ ଉପାଦେୟ ଓ ଶିକ୍ଷଣୀୟ ଅଟେ । ତନ୍ମଧ୍ୟରୁ କତିପୟ ନିମ୍ନରେ ପ୍ରଦତ୍ତ ହେଲା ।*

୧. ମଥାରେ ପଗଡ଼ି ପାଦରେ ତେଲ୍
ବଇଦ ସହିତ ହୋଇବ ଗେଲ୍ ।

୨. ଖାଇ ଶୋଇଲେ ବଢ଼ଇ ଆୟୁ
ଖାଇ ଧାଇଁଲେ ବଢ଼ଇ ବାୟୁ
ଖାଇ ବସିଲେ ବଢ଼ଇ ପେଟ
ଖାଇ ଖାଇଲେ ଯମର ଭେଟ ।

୩. ଗ୍ରୀଷ୍ମ ଓ ଶରତ କାଳକୁ ଛାଡ଼ି
ଅଦା ଖାଇବ ନିଇତି ତାଡ଼ି ।

୪. ଅନ୍ତେ ତିକ୍ତ ଦନ୍ତେ ଲୁଣ
ପେଟେ ପୁରିବ ତିନି କୋଣ ।

୫. ପ୍ରତିଦିନ ଯେ, କାଗଜି ଲେମ୍ବୁ ଖାଏ ।
ତା ପଇସା କି ବଇଦ ଖାଏ ?

୬. ଶାଗ, ଖଟା, ପିଠା, ଦହି
ରାତିରେ କେବେ ଖାଇବ ନାହିଁ ।

୭. ଶୁଖିଲା ମାଉଁସ, ବୟୋଧିକାନାରୀ
ଭୋଦୁଅ ମାସର ଖରା,
ପ୍ରଭାତ ମୈଥୁନ ସକାଳ ଶୟନ,
ଆମଦଧି ପ୍ରାଣ ହରା ।

୮. ଶାଗ ଭିତରେ ଜୟନ୍ତୀ
ଡ଼ାଲି ଭିତରେ ମୁଗ
ଖାଇଲେ ନ ହୁଏ ରୋଗ ।

Digitized by srujanika@gmail.com

୯. ବିରି ଡ଼ାଲିକୁ ପରିବା ସାରୁ
ତା' ସଙ୍ଗେ ସୋରିଷ ଶାଗ
ରୋଗୀଙ୍କୁ କେବେ ନ ଦେବ ଭାଇ
ବଢ଼ାଇ ଦେବ ରୋଗ ।

୧୦. ମୁଢ଼ି ଜୀର୍ଣ୍ଣ କରେ ଖୁରୁଡ଼ି ନଡ଼ିଆ
ପିଠା ଜୀର୍ଣ୍ଣକରେ ଶାଗ ତଳିଆ ।
ଆଳୁଜୀର୍ଣ୍ଣ କରେ ଅଦା
ଅଜୀର୍ଣ୍ଣକୁ ମୁଥା କରଇ ପଦା ।

୧୧. ଘିଅରେ ଭାଜିଣ ହରିଡ଼ା ଚୋପା
ଖାଇଥିବ ଯେବେ ଭାଇ,
ସବୁଦିନ ପାଇଁ ମନେ କରୁଥିବ
କେତେ ଉପକାରୀ ଏହି ।

୧୨. ଉଷାପାନ ଦେହ ହିତ ନିଶ୍ଚୟ
ନିର୍ମଳ ଶୀତଳ ହେଲେଟି ପୟ ।

୧୩. ବେଳ କାଳ ଜାଣି କରେ ଭୋଜନ
ବେଳ କାଳ ଜାଣି କରେ ଶୟନ,
ବେଳ କାଳ ଜାଣି କରେ ରମଣ
ତା'ଠାରୁ ଦୂରରେ ରହେ ମରଣ ।



Digitized by srujanika@gmail.com

୧୪.ତ୍ରିଫଳା:

ହରିଡ଼ା ବାହାଡ଼ା ଅଁଳା
ମିଶିଲେ ନାମଟି ତ୍ରିଫଳା
ମଞ୍ଜି ଫୋପାଡ଼ି ଚୋପାନେଇ
ଭିଜାଇ ଦିଅ ବା ସିଝାଇ
ପିଇଲେ ସକାଳ ସନ୍ଧ୍ୟାରେ
ବିବିଧ ବ୍ୟାଧି ଦୂର କରେ
ମଳାବରୋଧ ବାୟୁଦୋଷ
ଦୂରକରଇ ଯେତେ ଅର୍ଶ
ତ୍ରିଫଳା ସିଝା ପାଣି ନେଇ
ବ୍ରଣ ଘା'କୁ ଦେଲେ ଧୋଇ
ସେ ଘାଆ ଚଞ୍ଚଳ ଶୁଖଇ
ତା ଚିହ୍ନବର୍ଣ୍ଣ ରହେନାହିଁ ।

୧୫.ତ୍ରିକଟୁ:

ଶୁଣ୍ଠି ଓ ପିପ୍ପଳୀ ନେଇ
ମରିଚ ତହିଁରେ ମିଶାଇ
ଦେଲେ ସେ ତ୍ରିକଟୁ ବୋଲାଇ
ସମସ୍ତ କଫକୁ ନାଶଇ
ଶ୍ୱାସକାଶ ଓ ଶିରଶୂଳ
ପୀନସ କରଇ ନିର୍ମୂଳ
ପେଟରେ ଯେତେ ବାୟୁଦୋଷ
ତ୍ରିକଟୁ କରଇ ବିନାଶ ।

୧୬.ପଞ୍ଚକୋଳ ଓ ଷଡ଼ଉଷଣ:

ଏବେ କହିବା ପଞ୍ଚ କୋଳ
ପିପ୍ପଳୀ ଓ ପିପ୍ପଳୀମୂଳ
ଚିତ୍ରକ ଚାଇଁକାଠ ଶୁଣ୍ଠି
ମରିଚ ମିଶାଇଲେ ଏଠି
ଷଡ଼ ଉଷଣ ନାମେ ଖ୍ୟାତ
କରନ୍ତି ବାତ କଫ ହତ
କଣ୍ଠର ଜଡ଼ତା ନାଶଇ
ଶ୍ୱାସ ଓ କାଶ ନାଶ ଯାଇ
ଅଗ୍ନି ହୁଅଇ ବଳବାନ
ବିମଳ ରଖେ ସଦା ମନ ।

୧୭.ଚତୁର୍ଜାତକ:

ଏବେ କହିବା ଚତୁର୍ଜାତ
ଚିନି ସହିତ ତେଜପତ୍ର
ନାଗକେଶର ଅଳେଇଚ
ମାତ୍ରାରେ ସମାନ ସମସ୍ତ
ଧୋଇ ଶୁଖାଇ କରି ଚୂର୍ଣ୍ଣ
ମହୁ ସହିତ କଲେ ପାନ
ଅଜୀର୍ଣ୍ଣ ଅରୁଚି କରେ ନାଶ
ବ୍ୟକ୍ତିକୁ କରେ ହସ ହସ ।

୧୮.ତୁଳସୀ:

ଅପାର ତୁଳସୀ ଗୁଣ
ନାଶଇ ବିବିଧ କଷଣ
ସଦ୍ୟ ପ୍ରସ୍ତୁତ ରସ ନେଇ
ତା ସଙ୍ଗେ ମହୁକୁ ମିଶାଇ

Digitized by srujanika@gmail.com

ଦିନରେ ଦୁଇ ତିନିଥର
ସେବନ କଲେ ଅତି ଘୋର
ଶ୍ୱାସ ଓ କାଶ କରେ ନାଶ
ଆଦର ଅର୍ଦ୍ଦିତ ପୀନସ
ବାତ ଶ୍ଳୈଷ୍ମକ ଆଦି ଜ୍ୱର
ତୁଳସୀ ରସ କରେ ଦୂର

**୧୯.ବାସଙ୍ଗ**

ବାସଙ୍ଗପତ୍ର ରସ ଗୁଣ
ସୁଜନେ ମନ ଦେଇ ଶୁଣ
ଅଳ୍ପ ଉଷୁମ କରି ପତ୍ର
ତା'ରସେ ପାନ କଲେ ନିତ୍ୟ
ରକତପିତ୍ତ ଶ୍ୱାସ କାଶ
ସମୂଳେ କରିବ ବିନାଶ ।

**୨୦.ଦୂବ:**

କ) ଅପାର ଦୁବଘାସ ଗୁଣ
ସମୂଳେ ଉପାଡ଼ିଣ ଆଣ
ଜଳରେ ପରିଷ୍କାର ଧୋଇ
ଶିଳରେ ବାଟି ରସ ନେଇ
ମହୁ ସଙ୍ଗରେ କଲେ ପାନ
ନାଶଇ ରକ୍ତ ସ୍ରାବମାନ
ନାକରୁ ଅବା ମଳଦ୍ୱାରୁ
ଅଥବା ଦାନ୍ତରୁ ମାଢ଼ିରୁ
ଯେବେ ରକତ ପଡୁଥିବ
ଚଞ୍ଚଳ ଉପଶମ ହେବ
କିଅବା ଋତୁସ୍ରାବ କାଳେ
ଅତିମାତ୍ରାରେ ସ୍ରାବ ହେଲେ
ଦିନରେ ଦୁଇ ତିନିଥର
ଖାଇଲେ ସ୍ରାବ ହୁଏ ଦୂର ।
ଖ) ଜିରା ସହିତ ବାଟି ଦେଇ
ତିନିଚାମଚ ରସ ନେଇ
ଦିନରେ ଦୁଇ ତିନିଥର
ପାନ କରିଲେ ହୋଇ ସ୍ଥିର
ଦୂର ହୁଅଇ ଅତିସାର
ପାଚନକରେ ଆମମଳ

**୨୧.ଅଦା:**

ଅଦା ସହିତ ଦେଇ ଲୁଣ
ଭୋଜନ ପୂର୍ବରୁ ଚର୍ବଣ
ସାରି ଭୋଜନ କଲେ ନିତ୍ୟ
ଅଗ୍ନି ହୁଅଇ ପ୍ରଜ୍ୱଳିତ
ପାଚକ ରସ ସୃଷ୍ଟି ହୁଏ
ଅରୁଚି ଭାବ ଦୂର ହୁଏ,
ଖାଦ୍ୟରେ ଜାତ ହୁଏ ଶ୍ରଦ୍ଧା
ନରହେ କେବେପେଟ ବ୍ୟଥା ।

**୨୨.ରସୁଣ:**

ଖାଦ୍ୟ ସହିତ କରି ମେଳ
କଞ୍ଚାରସୁଣ ପାଞ୍ଚକୋଳ
ସେବନ କଲେ ପ୍ରତିଦିନ
ନାଶଇ ଆମ ଦୋଷ ମାନ
ରକତ ମଧ୍ୟେ ଯେତେ ଚର୍ବି
ସମସ୍ତ ଯାଇଥାଏ ଦ୍ରବି
ଫାଇଲେରିଆ ଦୋଷଥିଲେ
ବିନାଶ ହୁଅଇ ସମୂଳେ ।

Digitized by srujanika@gmail.com

୨୩. ବାତରୋଗରେ ସେକଦ୍ରବ୍ୟ:

ଧାତୁରା ବାସଙ୍ଗ ଡ଼ଙ୍କାରୀ
ନିର୍ଗୁଣ୍ଡି ଅର୍କ ଯୋଗ କରି
ଏ ପଞ୍ଚ ପଲ୍ଲବକୁ ନେଇ
ସୁତାରେ ପୁଡ଼ା ବାନ୍ଧି ଦେଇ
ଖଟା କାଞ୍ଜିରେ ବାମ୍ଫ କରେ
ନେଇ ରଖିବ ଯତ୍ନ ଭରେ
ଗଣ୍ଠିର ଫୁଲା ନାଶ ଯାଏ
ତିକ୍ତ ବେଦନା ଦୂର ହୁଏ
ଅଚଳ ଚଉରଙ୍ଗୀ ବାତ
ଏ ସେକେ ହୁଅଇ ନିପାତ ।

୨୪. ଶୂଳ:

ଶୁଣ୍ଠି ସୁହାଗା ଖଚର ଗାନ୍ଧି
ସହିଜନକେ ରସମେ ବଡ଼ି ବାନ୍ଧି
ଷାଠ୍ ଶୂଳ୍ ଔର ସତ୍‌ର ବାଇ
କହେ ଧନ୍ୱନ୍ତର୍ କ୍ଷଣମେ ଯାଇ ।

(ଶୁଣ୍ଠି, ଟାଙ୍ଗଣାଖଇ, ବିଟଲୁଣ, ହିଙ୍ଗୁକୁ ସଜନା ରସରେ ବାଟି ବଟିକା କରି ଖାଇଲେ ଶୂଳ ରୋଗ ଭଲ ହୁଏ) ।

୨୫. ଶ୍ୱାସ:

ଶୁଣ୍ଠି ଧନିଆଁ ଓ ପୁଷ୍କର ମୂଳ
ଭେଜି ଯାଷ୍ଟିମଧୂ ବାହାଡ଼ା ଫଳ
ପିପ୍ପଳୀ ମରିଚ ଗୁଡୁଚି ମୁଥା
କ୍ୱାଥ ପିଇ କାଟ ଶ୍ୱାସ ବ୍ୟଥା



Digitized by srujanika@gmail.com

# ବ୍ୟବହୃତ ହୋଇଥିବା କେତେକ ପାରିଭାଷିକ ଶବ୍ଦ ଓ ଅର୍ଥ

| | | |
|---|---|---|
| ଅଂଗ ଶିଥିଳତା- ( Inertia) | - | ଶରୀର ଅବଶ ହୋଇପଡ଼େ , କ୍ଳାନ୍ତି ଅନୁଭୂତ ହୁଏ । |
| ଅଗ୍ନିଦଗ୍ଧବ୍ରଣ- ( Burnt) | - | ଅଗ୍ନିଦ୍ୱାରା ପୋଡ଼ି ହୋଇ ଘା' ହୁଏ । |
| ଅଗ୍ନିବର୍ଦ୍ଧକ - ( Carminative) | - | ଜୀର୍ଣ୍ଣଶକ୍ତି ବୃଦ୍ଧି କରେ । |
| ଅଗ୍ନିବିସର୍ପ- (Herpes Zoster) | - | ଶରୀରର କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ଛୋଟ ଛୋଟ ମେଞ୍ଚାଏ ଫୋଟକାପରି ଦେଖାଯାଏ ଏବଂ ବେଦନା ସହିତ ଜ୍ୱର ହୁଏ । |
| ଅତିସାର- (Acute Diarrhoea) | - | ମଳ ତରଳ ଏବଂ ଅତ୍ୟଧିକ ମାତ୍ରାରେ ବାରମ୍ବାର ହୁଏ । |
| ଅପସ୍ମାର-(Epilepsy) | - | ହଠାତ୍ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯାଏ । ଚକ୍ଷୁ ବିକୃତ ହୋଇଯାଏ । ହାତପାଦରେ କମ୍ପନ ସୃଷ୍ଟି ହୁଏ । ଦାନ୍ତ ପଡ଼ିଯାଏ ଓ ମୂର୍ଚ୍ଛିତ ହୁଏ । |
| ଅମ୍ଳପିତ୍ତ(Hyper acidity) | - | ଆମ୍ବିଳି ହକୁଟି ଆସେ । ଛାତି ଜଳିଗଲାପରି ଲାଗେ । ପେଟର ଉପର ଭାଗରେ ପୀଡ଼ା ଅନୁଭୂତ ହୁଏ । ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ ଓ କୋଷ୍ଠକାଠିନ୍ୟ ଆଦି ହୋଇଥାଏ । |
| ଅରୁଚି (Anorexia) | - | ଖାଇବାକୁ ଇଚ୍ଛା ହୁଏନି । ଅଗ୍ନିବଳ କମିଯାଏ । |
| ଅସ୍ଥିଭଗ୍ନ (Bone fracture) | - | ହାଡ଼ ଭାଙ୍ଗିଯାଏ ବା ସ୍ଥାନଚ୍ୟୁତି ହୁଏ । |
| ଅର୍ଶ (Piles) | - | ମଳତ୍ୟାଗ ସମୟରେ ମଳଦ୍ୱାରରୁ କିଛି ବାହାରିଗଲାପରି ଓ କଣ୍ଟାସଦୃଶ ଅନୁଭବ ହୁଏ ଓ ପୀଡ଼ା ହୁଏ । |
| ଅଶ୍ମରୀ(Urinary calculus) | - | ପଥୁରୀ ଯୋଗୁଁ ମୂତ୍ରମାର୍ଗରେ ମୂତ୍ରତ୍ୟାଗ କରିବା ସମୟରେ ଯନ୍ତ୍ରଣା ଅନୁଭବ ହୁଏ । ବାରମ୍ବାର ଓ ଅଳ୍ପ ପରିମାଣରେ ପରିସ୍ରା ହୁଏ । |

Digitized by srujanika@gmail.com

| | | |
|---|---|---|
| ଅଣ୍ଡକୋଷ ବୃଦ୍ଧି(Hydrocele) | - | ବୃଷଣ (କୋଷ) ଫୁଲିଯାଏ ଓ ତରଳ ପଦାର୍ଥ ଜମିଯାଏ । |
| ଆମବାତ(Rheumatism) | - | ଛୋଟ ଓ ବଡ଼ ଗଣ୍ଠିରେ ପୀଡ଼ା ହୁଏ, ଫୁଲିଯାଏ ଓ ସମୟେ ସମୟେ ଜ୍ୱର ମଧ୍ୟ ଆସିଥାଏ । |
| ଅମାତିସାର(Amoebic Dysentery) | - | ମଳ ସହିତ ଆମ ବା ଲାଳ ଆସିଥାଏ ଏବଂ ବାରମ୍ବାର ପୀଡ଼ାଯୁକ୍ତ ମଳତ୍ୟାଗ ହୁଏ । |
| ଇନ୍ଦ୍ରଲୁପ୍ତ (Baldness) | - | ବାଳ ଉପୁଡ଼ି ଯାଇ ଚନ୍ଦା ହୋଇଯାଏ । |
| ଉଦକମେହ ( Diabetes Insipidus) | - | ବାରମ୍ବାର ଓ ଅଧିକମାତ୍ରାରେ ପରିସ୍ରା ହୁଏ । |
| ଉନ୍ମାଦ(Insanity/Psychosis) | - | ହିତାହିତଜ୍ଞାନ ହରାଏ ।ମନଚଞ୍ଚଳ ରହେ । ଓ ସର୍ବଦା ପ୍ରଳାପ କରେ । |
| ଉରୁସ୍ତମ୍ଭ (Stiffness, Paraplegia) | - | କଫବୃଦ୍ଧି ହୋଇ ଦୁଇ ଜଂଘ ଭାରି ହୋଇଯାଏ ଓ କ୍ରିୟାଶୀଳତା ହ୍ରାସ ପାଇବାକୁ ଲାଗେ । |
| କଳ୍କ(Paste) | - | ଶିଳ ବା ଗ୍ରାଇଣ୍ଡିଙ୍ଗ୍ ମେସିନ୍‌ରେ ଶୁଖିଲା ଔଷଧି ଦ୍ରବ୍ୟରେ ସାମାନ୍ୟ ପାଣି ପକାଇ ବା କଞ୍ଚା ଦ୍ରବ୍ୟକୁ ବାଟି ମେଞ୍ଚା କରାଯାଇଥାଏ । |
| କଷ୍ଟାର୍ତ୍ତବ (Dysmenorrhoea) | - | ସ୍ତ୍ରୀମାନଙ୍କର ମାସିକ ରକ୍ତସ୍ରାବ ସମୟରେ ପୀଡ଼ା ଅନୁଭବ ହୁଏ । |
| କାମଳା(Jaundice) | - | ଆଖି, ନଖ, ଜିଭ ଓ ସମ୍ପୂର୍ଣ୍ଣ ଶରୀର ହଳଦିଆ ଦିଶେ । ଅଗ୍ନିମାନ୍ଦ୍ୟ ହୁଏ ଓ ହଳଦିଆ ପରିସ୍ରାହୁଏ । ଶରୀର ଦୁର୍ବଳ ହୋଇଯାଏ । |
| କ୍ୱାଥ(Decoction) | - | ଶୁଷ୍କ ଔଷଧିଦ୍ରବ୍ୟକୁ ଦରକୁଟା କରି ସେଥିରେ କୋମଳ / ଅର୍ଦ୍ଧକୋମଳ ବା ମଧ୍ୟମ ଓ କଠିନ ପଦାର୍ଥକୁ ଯଥାକ୍ରମେ ୪/୮/୧୬ ଗୁଣା ପାଣି ଦେଇ ସିଝାଇବା ଓ ଅବଶିଷ୍ଟ ୧/୪ ଅଂଶ/୧/୮ ଅଂଶ/ ୧/୧୦ ଅଂଶ ରହିବା ପରେ ଛାଣି ବ୍ୟବହାର କରିବ । |

Digitized by srujanika@gmail.com

| | | |
|---|---|---|
| କିକିଶ (Linea nigra/albicans) | - | ଗର୍ଭାବସ୍ଥାରେ ଗର୍ଭିଣୀ ସ୍ତ୍ରୀମାନଙ୍କର ତଳିପେଟ ଓ ଜଂଘରେ ଦାଗ ହୁଏ ଓ କୁଣ୍ଡାଇ ହୁଏ । |
| ଗୁଦଭ୍ରଂଶ (Fissure in Ano) | - | ମଳଦ୍ୱାର ଫାଟିଯାଏ ବା କ୍ଷତ ହୁଏ ଓ ଯନ୍ତ୍ରଣା ଅନୁଭବ ହୁଏ । |
| ଗୁଦରୋଗ (Diseases of Anorectum) | - | ମଳଦ୍ୱାରରେ ହେଉଥିବାରୋଗ |
| ଗ୍ରନ୍ଥିଶୋଥ (Lymphadenitis) | - | କାନମୂଳ , ବେକମୂଳ ଆଦିରେ ଗ୍ରନ୍ଥିଗୁଡ଼ିକ ଫୁଲିଯାଇ ଦରଜ ହୁଏ ଓ ଜ୍ୱର ଆସେ । |
| ଗୃଧ୍ରସୀବାତ (Sciatica) | - | ବଂକ୍ଷଣ ପ୍ରଦେଶରୁ ପାଦପର୍ଯ୍ୟନ୍ତ ଛୁଞ୍ଚିପରି ପୀଡ଼ା ଓ ଶିର ଟାଣିହୋଇଥାଏ । ବସିବା ଉଠିବାବେଳେ କଷ୍ଟ ହୁଏ । |
| ଚୂର୍ଣ୍ଣ (Fine Powder) | - | ଶୁଷ୍କ ଔଷଧି ଦ୍ରବ୍ୟକୁ କୁଟି କପଡ଼ା କିମ୍ବା ଚାଲୁଣୀ ଦ୍ୱାରା ଛାଣି ରଖାଯାଏ । |
| ଜୀବନୀୟ (Vitaliser) | - | ବଳକାରକ ବା ଶକ୍ତିବର୍ଦ୍ଧକ । |
| ଜ୍ୱରଘ୍ନ (Anti pyretic) | - | ଜ୍ୱର ଉପଶମ କରେ । |
| ତମକ ଶ୍ୱାସ (Bronchial Asthma) | - | ଶ୍ୱାସରେ ଧଇଁପେଲି ହୁଏ ଓ ଜ୍ୱର ରହିଥାଏ । |
| ତିକ୍ତ-(Bitter taste) | - | ସ୍ୱାଦରେ ପିତା ଲାଗେ । |
| ତୃଷ୍ଣା (Polydipsia, Excessive thirst) | - | ପାଟି ଶୁଖିଯାଏ, ପାଣି ପିଇବାକୁ ଇଚ୍ଛା ହୁଏ । |
| ଦୂଷିତ ବ୍ରଣ (Non-healing Ulcer) | - | ବିଭିନ୍ନ କାରଣରୁ ସଂକ୍ରମିତ ହୋଇ ଘା' ଶୁଖେ ନାହିଁ । |
| ଧାତୁକ୍ଷୟ ଓ ଧ୍ୱଜଭଙ୍ଗ (Seminuria and Impotency) | - | ହସ୍ତମୈଥୁନ ଓ ଅତିମାତ୍ରରେ ସହବାସ, ଉତ୍ତେଜକପୂର୍ଣ୍ଣ ସିନେମା ଦେଖିବା, କୁପରିବେଶରେ ଅଧିକାଂଶ ସମୟ ରହିଲେ ଓ ଅଣ୍ଡା, ଚିଙ୍ଗୁଡ଼ି, କୁକୁଡ଼ା ମାଂସ ଓ |

Digitized by srujanika@gmail.com

ମସଲା ଆଦି ଉତ୍ତେଜକ ପୂର୍ଣ୍ଣ ଖାଦ୍ୟ ମାତ୍ରାଧିକ ସେବନ କରିବା ଦ୍ୱାରା ଶୁକ୍ରଧାତୁ କ୍ଷୟ ହୋଇ ପୁରୁଷ ସହବାସରେ ଅକ୍ଷମତା ପ୍ରକାଶ କରିଥାଏ ।

ନବଜ୍ୱର (Influenzal fever) - ଜ୍ୱରର ପ୍ରାରମ୍ଭିକ ଅବସ୍ଥା ବା ଆମଜ୍ୱର ।

ନସ୍ୟ (Snuffing) - ନାକରେ ଶୁଂଘିବା ଅଥବା ଦ୍ରବ ପଦାର୍ଥ ନାକରେ ପକାଇବା ।

ନାଡ଼ୀବ୍ରଣ (Sinus) - ମଳଦ୍ୱାର ନିକଟରେ ବ୍ରଣ ହୋଇ ପୀଡ଼ା ଅନୁଭୂତ ହୁଏ ।

ପଞ୍ଚାଙ୍ଗ (Whole part of the plant) - ବନସ୍ପତିର ପତ୍ର, ଫୁଲ, ଫଳ, ଛାଲି ଓ ମୂଳ ।

ପାଣ୍ଡୁ (Anaemia) - ରକ୍ତରୁ ହିମୋଗ୍ଲୋବିନ୍ ମାତ୍ରା କମିଯାଏ । ଶରୀର ମଳିନ ଦେଖାଯାଏ । କ୍ଷୁଧାଶକ୍ତି ଦୁର୍ବଳ ହୋଇପଡ଼େ ।

ପିତ୍ତାଶ୍ମରୀ (Stone in gall bladder) - ପିତ୍ତାଶୟରେ ଅଶ୍ମରୀ ସଦୃଶ ପଥର ଖଣ୍ଡ ସୃଷ୍ଟି ହୋଇଥାଏ । ପେଟ ଯନ୍ତ୍ରଣା, ଅମ୍ଳ ପିତ୍ତ ଓ ବାନ୍ତି ହୁଏ ।

ପୈତ୍ତିକ ଶିରଶୂଳ (Bilious headache) - ମୁଣ୍ଡବ୍ୟଥା ହୋଇ ବାନ୍ତିଲାଗେ । ଅତ୍ୟଧିକ ପିତ୍ତ ବଢ଼ିଗଲେ ଏପରି ହୁଏ ।

ପ୍ରବାହିକା (Dysentery) - ମଳ ସହିତ ଲାଳ ଆସିଥାଏ ଓ ବାରମ୍ବାର ଓ ବେଦନା ସହିତ ମଳତ୍ୟାଗ ହୁଏ ।

ବହୁମୂତ୍ର (Polyuria) - ବାରମ୍ବାର ଓ ଅଧିକ ମାତ୍ରାରେ ପରିସ୍ରା ହୁଏ ।

ବାତିକ ଶ୍ୱାସ (Emphyma) - ଶ୍ୱାସ ପ୍ରଶ୍ୱାସ ନେବା ସମୟରେ ଶବ୍ଦ ହୋଇଥାଏ ।

ବିରେଚନ (Purgation) - କୋଷ୍ଠଶୁଦ୍ଧି କରେ ।

ବିସର୍ପ (Erysipelas) - ଘା'ହୋଇ କୁଣ୍ଡାଇ ହୁଏ ଓ ଚକଡ଼ା ଚକଡ଼ା ହୋଇ ଫଳିଯାଏ ।

Digitized by srujanika@gmail.com

ବୀର୍ଯ୍ୟ (Potency of drug action) - କାର୍ଯ୍ୟକାରିତା ଶକ୍ତି

ବ୍ରଣ (Ulcer) - ଘା'

ବ୍ରଣଶୋଥ (Inflammation with ulcer) - ଘା' ସହିତ ଫୁଲିଯାଏ ।

ବୃଷଣଶୋଥ (Orchitis) - ଅଣ୍ଡକୋଷ ଫୁଲିଯାଏ ଓ ଯନ୍ତ୍ରଣା ହୁଏ ।

ଭଗନ୍ଦର (Fistula -in- ano) - ମଳଦ୍ୱାର ନିକଟରେ ଛୋଟ ଛୋଟ ରନ୍ଧ୍ର ହୁଏ । ଏହା ଅଧିକାଂଶ ସମୟରେ କୁଣ୍ଡାଇ ହୁଏ ଓ ବେଦନା ହୁଏ ।

ଭାବନା (Fortified by trituration with the juice / decoction of medicinal plants) - ଖଲରେ ଔଷଧି ଦ୍ରବ୍ୟ ଚୂର୍ଣ୍ଣରେ ବନସ୍ପତିର ସ୍ୱରସ/କ୍ୱାଥ ଆଦି ପକାଇ ମର୍ଦ୍ଦନ କରିବା ପ୍ରଣାଳୀ ।

ମଧୁମେହ (Diabetes Mellitus)- ଶରୀରରେ ଶର୍କରା ମାତ୍ରା ବଢ଼ିଯାଏ ବା ରକ୍ତ ଶର୍କରା ବୃଦ୍ଧିପାଏ ।

ମୁଖପାକ(Stomatitis) - ତୁଣ୍ଡ ବା ମୁହଁରେ ଘା' ହୋଇଥାଏ ।

ମୂତ୍ରକୃଚ୍ଛ/ ମୂତ୍ରାଘାତ(Dysuria) - ଅଳ୍ପ ଅଳ୍ପ ପରିମାଣ ପରିସ୍ରା ବାରମ୍ବାର ହୁଏ ।

ମେଦବୃଦ୍ଧି(Excessive Fat) - ଶରୀର ମୋଟା ହୋଇଯାଏ,ପେଟ ବଢ଼େ ।

ଯୋଷାପସ୍ମାର(Hysteria) - ବିଶେଷ କରି ସ୍ତ୍ରୀମାନଙ୍କଠାରେ ହୁଏ । ଏଥିରେ ବାଚାଳତା, ଭ୍ରମ ଆଦି ଦେଖାଯାଏ ଏହା ଏକ ପ୍ରକାର ମାନସିକ ରୋଗ ।

ରକ୍ତପିତ୍ତ (Haemorrhagic diseases) - ବିଭିନ୍ନ କାରଣରୁ ପିତ୍ତ ପ୍ରକୋପ ହୋଇରକ୍ତକୁ ଦୂଷିତକରିଥାଏ । ଫଳରେ ନାକ, କାନରୁ ରକ୍ତସ୍ରାବ ହୁଏ । ମୁଣ୍ଡବୁଲାଇହୁଏ । ଆଖିଲାଲି ଦିଶେ ।

ରକ୍ତପ୍ରଦର(Menorrhagia / Metrorrhagia) - ସ୍ତ୍ରୀମାନଙ୍କର ଋତୁସ୍ରାବରେ ବା ଅନ୍ୟ ସମୟରେ ଅତ୍ୟଧିକ ରକ୍ତସ୍ରାବ ହୋଇଥାଏ ଓ ଅନିୟମିତ ହୁଏ ।

Digitized by srujanika@gmail.com

ରକ୍ତମେହ (Haematuria) - ପରିସ୍ରାରେ ରକ୍ତ ଆସିଥାଏ ।

ରକ୍ତାତିସାର (Blood dysentery) - ମଳତ୍ୟାଗ ସମୟରେ ମଳସହିତ ରକ୍ତ ଆସେ ଓ ବାରମ୍ୱାର ହୁଏ ।

ରକ୍ତାର୍ଶ (Bleeding Piles) - ମଳଦ୍ୱାରରେ କଣ୍ଟା ସଦୃଶ ମାଂସ ପିଣ୍ଡୁଳା ରହି ମଳତ୍ୟାଗ ସମୟରେ ରକ୍ତସ୍ରାବ ହୋଇଥାଏ ।

ରସାୟନ (Geriatric tonic ) - ଯାହାର ସେବନ ଦ୍ୱାରା ଶରୀରର ସମସ୍ତ ଇନ୍ଦ୍ରିୟ, ଅବୟବ, ଦୀର୍ଘ ସମୟ ପର୍ଯ୍ୟନ୍ତ ସତେଜ ଓ କାର୍ଯ୍ୟକ୍ଷମ ରହେ ।

ସତ୍ତ୍ୱ (Water extractable solid substance) - ସଦ୍ୟ ବନସ୍ପତି ଦ୍ରବ୍ୟକୁ ଛେଚି (କଞ୍ଚା ଅବସ୍ଥାରେ) ସେଥିରେ ୪ ଗୁଣା ଓଜନର ପାଣିପକାଇ ଭଲ କରି ମିଶାଇ କିଛି ସମୟ ରଖିବ । ପାଣି ସ୍ଥିର ହୋଇଗଲା ପରେ ଛାଣିଦେବ ଓ ଖରାରେ ଶୁଖାଇ ଦେବ । ତଳେ ଜମିଯିବା ଅଂଶକୁ ସତ୍ତ୍ୱ କୁହାଯାଏ ।

ସନ୍ଧିବାତ (Arthritis) - ଶରୀରର ଗଣ୍ଠି, ଅଣ୍ଠା ଆଦିରେ ବେଦନା ହୁଏ । ବସିକରି ଉଠିବା ବେଳେ କଷ୍ଟହୁଏ ।

ସୂତିକାଜ୍ୱର (Puereperal Fever) - ସ୍ତ୍ରୀ ଶିଶୁ ସନ୍ତାନ ଜନ୍ମ ଦେଇ ସାରିବା ପରେ କୌଣସି କାରଣରୁ ସଂକ୍ରମିତ ହୋଇ ଜ୍ୱର ଆସିଥାଏ ଓ ବହୁଦିନ ରହେ ।

ସୂତ୍ରକୃମି (Thread worm) - ମଳରେ ଛୋଟ ଛୋଟ କୃମି (ସୂତାପରି) ଆସିଥାଏ ।

ସ୍ୱରଭଙ୍ଗ (Paralysis of larynx/ a stage of Asthma) - କଣ୍ଠସ୍ୱର ବସିଯାଏ ।

ସ୍ୱରଭେଦ (Hoarseness of voice)- ସ୍ୱର ଫାଟିଯାଏ ଓ ମୋଟାସ୍ୱର ହୋଇଯାଏ ।

ସ୍ନାୟୁଶୂଳ (Myelgia) - ଦେହସାରା ବ୍ୟଥା, ଛୁଞ୍ଚି ଫୋଡ଼ିଲାପରି ବେଦନା, ଦୁର୍ବଳତା ଏବଂ ମାଂସପେଶୀରେ ଯନ୍ତ୍ରଣା ଅନୁଭୂତ ହୁଏ ।

Digitized by srujanika@gmail.com

ସ୍ୱରସ (Juice) - ସଦ୍ୟ ବନସ୍ପତିର ଯେ କୌଣସି ଅଂଶକୁ ଛେଚି ଓ ଚିପୁଡ଼ି ରସ ବାହାର କରାଯାଇଥାଏ ।

ଶୀତପିତ୍ତ(Urticaria) - ଦେହ ମୁଣ୍ଡ ଚକଡ଼ା ଚକଡ଼ା କୁଣ୍ଡାଇ ହୋଇ ଫୁଲିଯାଏ ।

ଶୁକ୍ରଜନନ(Semen Promoting)-ଶୁକ୍ରଧାତୁ ବୃଦ୍ଧି କରାଏ ।

ଶୁକ୍ରମେହ (Spermaturia) - ପରିସ୍ରାରେ ଶୁକ୍ର ଆସିଥାଏ

ଶୋଥ(Oedema) - ଶରୀରର କୌଣସି ଅଂଶରେ ଅଥବା ସଂପୂର୍ଣ୍ଣ ଶରୀରରେ ପାଣି ଜମି ଫୁଲିଯାଏ । ଫୁଲିଥିବା ସ୍ଥାନକୁ ଅଂଗୁଳିରେ ଚିପି ଦେଲେ ଖାଲ ହୋଇ କିଛି ସମୟ ରହିଯାଏ ।

ଶ୍ୱାସହର (Anti-asthmatic) - ଶ୍ୱାସ ଓ ଧଇଁ ପେଲିହେବାରୁ ଆରାମ ମିଳେ ।

ଶ୍ୱିତ୍ର (Leucoderma/Vitiligo) - ଦେହରେ ଚକଡ଼ା ଚକଡ଼ା ଧଳା ଛଉ ହୋଇଯାଏ ।

ଶ୍ୱେତପ୍ରଦର (Leucorrhoea) - ସ୍ତ୍ରୀମାନଙ୍କର ଯୋନିରୁ ଧଳାପରି ସ୍ରାବ ହୁଏ ଓ ଶରୀର ଦୁର୍ବଳ କରିଦିଏ ।

ଶ୍ଲୀପଦ(Elephantiasis/Filariasis)- ଗୋଡ଼ ବା ହାତ ଫୁଲିଯାଇ ବହୁଦିନ ପର୍ଯ୍ୟନ୍ତ ରହେ । ସମୟେ ସମୟେ ବାଳସୁଆ ବା ଜଂଘ ସଂଧିରେ ଗୋଟା ପଡ଼ି ଜ୍ୱର ହୁଏ ।

ହୃଦ୍‌ରୋଗ (Diseases of Heart) -ଛାତିରେ ଯନ୍ତ୍ରଣା ଅନୁଭୂତ ହୁଏ ଓ ହୃଦ୍‌ସ୍ପନ୍ଦନ ବଢ଼ିଯାଏ ।

କ୍ଷୟରୋଗ (Tubercular diseases)-ବିଭିନ୍ନ କାରଣରୁ ସମସ୍ତ ଧାତୁର କ୍ରମଶଃ କ୍ଷୟ ହୋଇ ଶରୀର ଅବଶ ହୋଇପଡ଼େ, ମଳିନ ଦିଶେ, ଦୁର୍ବଳ ଲାଗେ, ସ୍ପୃହା ଓ ତେଜ କମିଯାଏ ।

କ୍ଷୀରପାକ (Kind of process for preparation of medicated milk) - ଔଷଧି ଦ୍ରବ୍ୟର ୮ ଗୁଣା କ୍ଷୀର ଓ ୩୨ ଗୁଣା ପାଣି ଦେଇ ମନ୍ଦ ମନ୍ଦ ନିଆଁରେ ପାକ କରିବ । ଶେଷରେ ଅବଶିଷ୍ଟ ୮ ଗୁଣା କ୍ଷୀରକୁ ଛାଣିକରି ରଖି ମାତ୍ରା ଅନୁସାରେ ସେବନ କରିବାକୁ ଦେବ ।



Digitized by srujanika@gmail.com

# ବ୍ୟବସାୟିକ ଅଗ୍ରାଧିକାର ଦୃଷ୍ଟିରୁ କେତେକ ବନସ୍ପତିରଚାଷ ପ୍ରଣାଳୀ

*(ସୌଜନ୍ୟ-ରାଷ୍ଟ୍ରୀୟ ଔଷଧୀୟ ବୃକ୍ଷ ପରିଷଦ)*

## ଅଁଳା (Emblica officinalis)

| | |
|---|---|
| ମୃତ୍ତିକା ଓ ଜଳବାୟୁ | - ଏହା କେବଳ ବାଲିଥିବା ସ୍ଥାନକୁ ଛାଡ଼ି ଅନ୍ୟ ସମସ୍ତ ମୃତ୍ତିକାରେ ହୋଇଥାଏ, କିନ୍ତୁ ଉର୍ବର ଦୋରୋସା ମାଟି ଅଧିକ ଅମଳକ୍ଷମ ଅଟେ । ଏହାର ଚାଷ ପାଇଁ ବାର୍ଷିକ ବୃଷ୍ଟିପାତ ୬୩୦-୮୦୦ ମି.ମି ହେବା ଆବଶ୍ୟକ । ଚାରା ରୋପଣର ୩ ବର୍ଷ ପର୍ଯ୍ୟନ୍ତ ଏହାକୁ ମେ-ଜୁନ୍ ମାସର ଟାଣୁଆ ଖରା ଏବଂ ଶୀତ କାଳରେ କୁହୁଡ଼ିରୁ ରକ୍ଷା କରିବା ଆବଶ୍ୟକ । ପରିପୂର୍ଣ୍ଣ ବୃକ୍ଷ ଅତିବେଶୀରେ ୪୬° ସେଣ୍ଟିଗ୍ରେଡ୍ ଉତ୍ତାପ ଗ୍ରହଣ କରିବାର କ୍ଷମତା ରଖିଥାଏ । |
| ଚାରାରୋପଣ | - ଉନ୍ନତ ମାନର ମଞ୍ଜିରୁ ଚାରା ପକାଇ ୧ ବର୍ଷ ପରେ ଜମିରେ ରୋପଣ କରାଯାଏ । ଅଧିକ ଅମଳକ୍ଷମ ପାଇଁ କଲମୀ ଚାରା ମଧ ବ୍ୟବହାର କରାଯାଏ । ମେ-ଜୁନ୍ ମାସରେ ୪-୫ ମି. ଦୂରତାରେ ଗାତ ଖୋଳି ୧୫-୨୦ ଦିନ ସୂର୍ଯ୍ୟାଲୋକରେ ରଖି ଚାରାରୋପଣ କରାଯାଏ । |
| ଜଳ ସେଚନ | - ବର୍ଷାଦିନେ ଅଁଳା ଗଛରେ ପାଣିଦେବାକୁ ପଡ଼େ ନାହିଁ । ଛୋଟ ଗଛ ଖରାଦିନେ ୧୫ ଦିନ ବ୍ୟବଧାନରେ ପାଣି ଦରକାର କରେ । ଫଳ ଧରା ଗଛରେ ଖରାଦିନେ ପ୍ରତି ସପ୍ତାହରେ ପାଣି ଦେଲେ ଉନ୍ନତ ମାନର ଫଳ ଆସେ ଓ ଅପକ୍ୱ ଫଳ ଝଡ଼େ ନାହିଁ । |

Digitized by srujanika@gmail.com

| | | |
|---|---|---|
| ଅମଳ | - | ଅଁଳା ଚାରା ରୋପଣର ୭-୮ ବର୍ଷ ପରେ ଔଷଧର ଉପଯୋଗୀ ପକ୍ୱଫଳ ଆସେ । କଲମୀଚାରା ୫ ବର୍ଷ ପରେ ଗଛରେ ଫଳ ଆସିବା ଆରମ୍ଭ ହୋଇଥାଏ । ଫେବୃୟାରୀ ମାସରେ ପକ୍ୱ ଅଁଳାରେ ଔଷଧୀୟ ଗୁଣ ସର୍ବାଧିକ ଥାଏ । ଦକ୍ଷିଣ ଭାରତରେ ବର୍ଷ ତମାମ ଗଛରେ ଅଁଳା ଉପୁନ୍ନ ହୋଇଥାଏ ।<br><br>୧୦ ବର୍ଷର ପରିପୂର୍ଣ୍ଣ ଗଛ ୫୦-୭୦ କିଗ୍ରା ଫଳ ପ୍ରଦାନ କରେ । ଫଳ ଗୁଡ଼ିକର ଓଜନ ପ୍ରାୟ ୬୦-୭୦ ଗ୍ରାମ୍ ହୋଇଥାଏ । ୧ କି.ଗ୍ରାରେ ୧୫-୨୦ ଗୋଟି ଫଳ ଆସେ । ଯତ୍ନରେ ରଖିଲେ ଅଁଳାଗଛ ୭୦ ବର୍ଷ ପର୍ଯ୍ୟନ୍ତ ଫଳ ପ୍ରଦାନ କରେ । |
| ଲାଭଜନକ ହିସାବ | - | ପ୍ରତି ହେକ୍ଟର ଜମିରେ ୮ ବର୍ଷ ଗଛ ୨୦-୨୫ ଟନ୍ ଫଳ ପ୍ରଦାନ କରେ । ଯାହାର ମୂଲ୍ୟ ୩୪୦୦୦ ଟଙ୍କା ଅଟେ । ୧ କିଲୋ ଫଳ (ଶୁଖିଲା) ମୂଲ୍ୟ ପ୍ରାୟ ଟ ୩୦/- ରୁ ଟ ୪୫/- ଅଟେ । |

Digitized by srujanika@gmail.com

# ଅଶୋକ (Saraca asoca)

| | | |
|---|---|---|
| ମୃତ୍ତିକା ଓ ଜଳବାୟୁ | - | ସାମାନ୍ୟ ଅମ୍ଳୀୟ ମୃତ୍ତିକାଠାରୁ ସାଧାରଣ ଓ ଉର୍ବର ମୃତ୍ତିକାରେ ଏହି ବନସ୍ପତି ହୁଏ । ଜଳ ସେଚନର ବ୍ୟବସ୍ଥା ଥିଲେ କ୍ରାନ୍ତିୟ ଜଳବାୟୁ ସ୍ଥାନ ମାନଙ୍କରେ ଏହି ଗଛ ହୋଇଥାଏ । |
| ଚାରା ରୋପଣ | - | ମଞ୍ଜି ଓ ଡ଼ାଳରୁ ଅଙ୍କୁରୋଦ୍‌ଗମ କରାଯାଇଥାଏ । ଚାରା ଗଛ ଗୁଡ଼ିକ ବର୍ଷା ଋତୁରେ ଉର୍ବର ମାଟିରେ ପ୍ରସ୍ତୁତ କରଯାଏ । |
| ଜଳ ସେଚନ | - | ପ୍ରତି ସପ୍ତାହ ଅଥବା ୧୫ ଦିନରେ ଥରେ ଜଳସେଚନର ଆବଶ୍ୟକ ପଡ଼େ । |
| ଅମଳ | - | ଚାରା ରୋପଣର ୧୦ ବର୍ଷ ହୋଇଗଲାପରେ ଗଛରୁ ନିୟମାନୁସାରେ ଛାଲି ସଂଗ୍ରହ କରି ଶୁଖାଇ ଔଷଧ ପାଇଁ ବ୍ୟବହାର କରାଯାଇ ଥାଏ । |
| ଲାଭ ଜନକ ହିସାବ | - | ୧ କି.ଗ୍ରା ଛାଁଳିର ମୂଲ୍ୟ ଟ ୧୨୦/- ରୁ ଟ ୧୫୦/- ଅଟେ । (୨୦୦୧ ବର୍ଷର ହିସାବ) |

Digitized by srujanika@gmail.com

# ଅଶ୍ୱଗନ୍ଧା (Withania somnifera)

| | | |
|---|---|---|
| ମୃତ୍ତିକା ଓ ଜଳବାୟୁ | - | ଏହା ବାଲିଆ ଦୋରୋସା ମାଟି କିମ୍ବା ହାଲକା ନାଲିମାଟିରେ ଏବଂ ଜଳ ନିଷ୍କାସନ ପ୍ରଣାଳୀ ଥିବା ସ୍ଥାନରେ ହୋଇଥାଏ । ଏହାର ଚାଷ ପାଇଁ ୫୦୦-୭୫୦ ମି.ମି. ବର୍ଷାପାଣି ଓ ୨୦°-୩୫° ଉତ୍ତାପ ଆବଶ୍ୟକ ହୋଇଥାଏ । |
| ଚାରା ରୋପଣ | - | ଏହାର ମଞ୍ଜିକୁ ୧-୩ ସେ.ମି ଗଭୀରରେ ଧାଡ଼ି କରି ନର୍ସରୀରେ ଚାରା ରୋପଣ କରାଯାଏ । ଜୁନ୍-ଜୁଲାଇରେ ଚାରା ଅଙ୍କୁରୋଦ୍‌ଗମ ହୁଏ । ୧ ହେକ୍ଟର ଜମିରେ ୫୦୦-୭୫୦ ଗ୍ରାମ୍ ଚାରା ରୋପଣ ହୋଇଥାଏ । ଚାରା ୨୫-୩୫ ଦିନ ହୋଇଗଲେ ୬୦ x ୬୦ ସେ.ମି. ବ୍ୟବଧାନରେ ଓ ଧାଡ଼ି କରି ପ୍ରତ୍ୟାରୋପଣ କରାଯାଏ । ଏହା ବର୍ଷାଦିନର ଖରିଫ ଫସଲ ହୋଇଥିବାରୁ ମୌସୁମୀ ବର୍ଷା ଆରମ୍ଭରୁ ରୋପଣ କରାଯାଏ । |
| ଜଳସେଚନ | - | ଚାରାରୋପଣ ପରେ ସାମାନ୍ୟରୂପେ ଜଳ ସେଚନ କରାଯାଏ । ନିୟମିତ ବ୍ୟବଧାନରେ ବର୍ଷା ହେଉଥିଲେ ଜଳ ସେଚନର ଆବଶ୍ୟକ ପଡ଼ି ନଥାଏ । ଅତ୍ୟଧିକ ବର୍ଷା କିମ୍ବା ଜଳ ଏହି ବନସ୍ପତି ପାଇଁ କ୍ଷତିକାରକ ଅଟେ । |
| ଅମଳ | - | ଡ଼ିସେମ୍ବର ମାସରେ ଫୁଲ ଓ ପରେ ଫଳ ଆସେ । ଚାରା ରୋପଣର ୧୫୦-୧୮୦ ଦିନ ମଧ୍ୟରେ ଅର୍ଥାତ୍ ଜାନୁୟାରୀ-ମାର୍ଚ୍ଚ ମାସରେ ଗଛ ପରିପକ୍ୱ ହୋଇଥାଏ । ପତ୍ର ଶୁଖିଯାଏ ଓ ଫଳ ହଳଦିଆ ଦିଶେ । ଏହି ସମୟରେ ଗଛକୁ ଉପୁଡ଼ାଇ ତା'ର ମୂଳକୁ ଔଷଧ ପାଇଁ ସଂଗ୍ରହ କରାଯାଇଥାଏ । |

Digitized by srujanika@gmail.com

୧ ହେକ୍ଟର ଜମିରୁ ୬୫୦ କି.ଗ୍ରା ରୁ ୮୦୦ କି.ଗ୍ରା ମୂଳ ସଂଗ୍ରହ କରାଯାଏ ।

ବ୍ୟବସାୟିକ ଦୃଷ୍ଟିକୋଣରୁ ଚାଷକଲେ ୧ ହେକ୍ଟରରୁ ପ୍ରାୟ ୩-୫ କ୍ୱିଣ୍ଟାଲ୍ ଶୁଖିଲା ମୂଳ ଓ ୫୦-୭୫ କି.ଗ୍ରା ମଞ୍ଜି ସଂଗ୍ରହ କରାଯାଇଥାଏ ।

ଲାଭଜନକ ହିସାବ - ପ୍ରତି ହେକ୍ଟର ଜମିରେ ଚାଷକଲେ ସମୁଦାୟ ଖର୍ଚ୍ଚ ଟ ୫,୬୦୦/- ହୁଏ ଓ ଲାଭାଂଶ ପ୍ରାୟ ଟ ୨୪୦୦୦/- ହୋଇଥାଏ । (୨୦୦୧ ବର୍ଷର ହିସାବ) ।

Digitized by srujanika@gmail.com

# ଇଷବଗୋଲ (Plantago ovata)

| | |
|---|---|
| ମୃତ୍ତିକା ଓ ଜଳବାୟୁ | - ଏହି ବନସ୍ପତି ଚାଷ ପାଇଁ ହାଲ୍‌କା ମାଟି, ପାଣିନିଗିଡ଼ା ଜମି ଓ ସଦାସର୍ବଦା ଜଳସେଚନର ସୁବିଧା ଥିବା ଜମି ଦରକାର ହୁଏ । ଉଷ୍ମ ଜଳବାୟୁ ଥିବା ସ୍ଥାନ ଏହି ଚାଷ ପାଇଁ ଅନୁକୂଳ ଅଟେ । |
| ଚାରା ରୋପଣ | - ଶୁଷ୍କ ଓ ଥଣ୍ଡା ସମୟରେ ଏହାର ଚାରା ପ୍ରସ୍ତୁତ କରାଯାଏ । ନଭେମ୍ବର ମାସ ପ୍ରଥମ ସପ୍ତାହରେ ଚାରା ରୋପଣ କରି ଅଧିକ ଅମଳକ୍ଷମ କରାଯାଇଥାଏ । ମଞ୍ଜିରୁ ଚାରା ବାହାରିବା ପାଇଁ ୨୦ ରୁ ୩୦° ସେଣ୍ଟିଗ୍ରେଡ୍ ଉତ୍ତାପ ଦରକାର ହୁଏ । |
| ଜଳ ସେଚନ | - ମଞ୍ଜି ବୁଣିବା ପରେ ସାମାନ୍ୟ ପାଣି ସିଞ୍ଚାଯାଏ । ମଞ୍ଜିରୁ ଅଙ୍କୁର ବାହାରିବା ପାଇଁ ୬-୭ ଦିନ ଦରକାର କରେ ଏବଂ ୬-୭ ଥର ଜଳ ସେଚନ କରାଯାଏ । ମଧ୍ୟମ ପ୍ରକାର ବାଲିଆ ମାଟିରେ ଚାରାରୋପଣ କରାଯାଇଥାଏ । |
| ଅମଳ | - ଜମିରେ ଚାରା ରୋପଣର ୧୧୦-୧୩୦ ଦିନ ଭିତରେ କିମ୍ବା ଫେବୃୟାରୀ - ମାର୍ଚ୍ଚ ମାସରେ ଅମଳ ହୁଏ । ଗଛର ରଙ୍ଗ ହଳଦିଆ ଏବଂ ଫଳ ବାଇଗଣି ରଙ୍ଗ ହୋଇଗଲେ ପରିପକ୍ୱତା ହୋଇଗଲା ପରି ଜଣାଯାଏ । ଶୁଖିଲା ପାଗ ଓ ଖରା ସମୟରେ ଫଳ ସଂଗ୍ରହ କରାଯାଏ । |
| ଲାଭଜନକ ହିସାବ | - ପ୍ରତି ହେକ୍ଟର ଜମିରେ ସମୁଦାୟ ୨୫ ହଜାର ଟଙ୍କା ଖର୍ଚ୍ଚ କଲେ ୬୩ ହଜାର ଟଙ୍କା ଆଦାୟ ଆସିଥାଏ ଏବଂ ଲାଭାଂଶର ପରିମାଣ ୩୮ ହଜାର ଟଙ୍କା ହୋଇଥାଏ । |

Digitized by srujanika@gmail.com

# ଗୁଡ଼ମାରୀ (Gymnema sylvestre)

| | |
|---|---|
| ମୃତ୍ତିକା ଓ ଜଳବାୟୁ | - ଏହି ବନସ୍ପତି ବିଭିନ୍ନ ମାଟିରେ ଏବଂ ସମୁଦ୍ରପତନର ୬୦୦ ମିଟର ଉଚ୍ଚତା ଭିତରେ ଓଡ଼ିଶାର ପ୍ରାୟ ସମସ୍ତ ଅଞ୍ଚଳରେ ହୋଇଥାଏ । |
| ଚାରାରୋପଣ | - ପରିପକ୍ୱ ମଞ୍ଜି ଅକ୍ଟୋବର - ଡ଼ିସେମ୍ବର ମାସରେ ସଂଗ୍ରହ ହୋଇ ଛୋଟ ଛୋଟ ଜରିମୁଣାରେ ରଖି ଚାରା ପ୍ରସ୍ତୁତ କରାଯାଇଥାଏ । ଏହି ଚାରା ଫେବୃୟାରୀ-ମାର୍ଚ୍ଚ ରେ ଜମିରେ ରୋପଣ କରାଯାଏ । ବର୍ଷା ଦିନେ ଏହା ବଢ଼ିଥାଏ ଓ ବଢ଼ିବା ସମୟରେ ଏଥିରେ ରଞ୍ଜା ବା ବଢ଼ିବା ପାଇଁ ସହାୟକ ବାଡ଼ ଦରକାର ପଡ଼େ । |
| ଜଳସେଚନ | - ସମୟ ଅନୁସାରେ ପ୍ରତି ସପ୍ତାହ ଅଥବା ୧୫ ଦିନରେ ଜଳସେଚନ କରାଯାଇଥାଏ । |
| ଅମଳ | - ବନସ୍ପତି ୧ ବର୍ଷ ହୋଇଗଲା ପରେ ଅମଳକ୍ଷମ ହୋଇଯାଏ । ପତ୍ର ଗୁଡ଼ିକ ଅକ୍ଟୋବର-ଫେବୃୟାରୀ ରେ ସଂଗୃହିତ ହୁଏ ଏବଂ ମୂଳକୁ ଗ୍ରୀଷ୍ମଋତୁରେ ସଂଗ୍ରହ କରି ଶୁଖାଇ ରଖାଯାଏ । |
| ବ୍ୟବସାୟିକ ହିସାବ | - ଏକର ପ୍ରତି ପ୍ରଥମ ୪ ବର୍ଷରେ ପ୍ରାୟ ଟ.୨,୫୦୦/- ଖର୍ଚ୍ଚ କରିବାକୁ ଥିଲାବେଳେ ଟ.୬,୦୦୦/- ଆଦାୟ ହୋଇଥାଏ । ଏବଂ ପ୍ରତି ଏକର ଜମିରୁ ପ୍ରାୟ ୪ କ୍ୱିଣ୍ଟାଲ୍ ପତ୍ର ପ୍ରତି ବର୍ଷ ଔଷଧ ନିମିତ୍ତ ଆଦାୟ ହୋଇଥାଏ । ଔଷଧପାଇଁ ଏକ କି.ଗ୍ରା ଔଷଧିଦ୍ରବ୍ୟର ଦାମ ଟ ୧୨/- ଟ-୧୫/ ଅଟେ । |

Digitized by srujanika@gmail.com

# ଗୁଳୁଚି (Tinospora cordifolia)

| | | |
|---|---|---|
| ମୃତ୍ତିକା ଓ ଜଳବାୟୁ | - | ଏହା ପ୍ରାୟ ଓଡ଼ିଶାର ସବୁ ସ୍ଥାନର ମାଟିରେ ହୁଏ । |
| ଚାରା ରୋପଣ | - | ବନସ୍ପତିର ଡ଼ାଳକୁ କାଟି ମେ-ଜୁନ୍‌ରେ ରୋପଣ କରାଯାଏ । ଏହା ବୃଦ୍ଧି ପାଇବା ସମୟରେ ଲିମ୍ବ କିମ୍ବା ଆମ୍ବ ଗଛ ପାଖରେ ଥିଲେ ଔଷଧି ଦୃଷ୍ଟିରୁ ଅତ୍ୟନ୍ତ ଗୁଣ ସଂପନ୍ନ ହୋଇଥାଏ । |
| ଜଳସେଚନ | - | ଚାରା ରୋପଣ ପରେ ସାପ୍ତାହିକ କିମ୍ବା ୧୫ ଦିନରେ ଥରେ ଜଳସେଚନ କରାଯାଏ । |
| ଅମଳ | - | ଲତାଟି ପରିପକ୍ୱତା ପ୍ରାପ୍ତ କଲେ ତାର ଡ଼ାଳକୁ ଖଣ୍ଡ ଖଣ୍ଡ କରି କାଟି ସଂଗ୍ରହ କରି ଶୁଖାଇ ରଖାଯାଏ । |
| ଲାଭଜନକ ହିସାବ | - | ପ୍ରାୟ ହେକ୍ଟର ପ୍ରତି ୮-୧୦ କ୍ୱିଣ୍ଟାଲ୍ ଆଦାୟ ହୋଇଥାଏ । ଗୋଟିଏ ଏକରରେ ଗୁଳୁଚି ଚାଷକଲେ ୧ ବର୍ଷରେ ଏକର ପ୍ରତି ଟ ୨୫୦୦/- ଖର୍ଚ୍ଚକଲେ ଟ ୬୦୦୦/- ଆଦାୟ ଆସିଥାଏ । |

Digitized by srujanika@gmail.com

# ତୁଳସୀ (Ocimum sanctum)

| | |
|---|---|
| ମୃତ୍ତିକା ଏବଂ ଜଳବାୟୁ | - ଏହା ପ୍ରାୟ ସମସ୍ତ ପ୍ରକାର ମାଟିରେ ହୋଇଥାଏ । ବନସ୍ପତିଟି ଛାଇ ଥିବା ସ୍ଥାନରେ ବା ସିଧା ସଳଖ ସୂର୍ଯ୍ୟ କିରଣ ନ ପଡୁଥିବା ସ୍ଥାନରେ ମଧ ବଢ଼ିପାରେ । କିନ୍ତୁ ଏଥିରୁ କମ୍ ପରିମାଣରେ ତୁଳସୀ ତେଲ ବାହାରିଥାଏ । ଗଛଟି ଅଧିକ ଦିନ ରହିଲେ ଏବଂ ସୂର୍ଯ୍ୟକିରଣ ଅଧିକ ସମୟ ପାଇଲେ ଗଛଟି ଆବଶ୍ୟକ ମାତ୍ରାରେ ବୃଦ୍ଧି ପାଇଥାଏ ଏବଂ ବ୍ୟବସାୟିକ ଦୃଷ୍ଟିରୁ ଉନ୍ନତ ମାନର ତେଲ ନିଷ୍କାସନ କରାଯାଇପାରେ । ଓଡ଼ିଶା ଜଳବାୟୁ ପାଇଁ ଏହା ଅତି ଉତ୍ତମ ବନସ୍ପତି ଅଟେ । |
| ଚାରାରୋପଣ | - ଫେବୃୟାରୀ ୩ୟ ସପ୍ତାହରେ ମଞ୍ଜିରୁ ଚାରା ପ୍ରସ୍ତୁତି କରାଯାଏ ଏବଂ ଏପ୍ରିଲ୍ ମାସ ମଧଭାଗରେ ଏହି ଚାରାକୁ ଅନ୍ୟତ୍ର ରୋପଣ କରାଯାଇଥାଏ । ପ୍ରାୟ ୨୦୦-୩୦୦ ଗ୍ରାମ୍ ମଞ୍ଜିରୁ ହେଉଥିବା ଚାରା କୁ ୧ ହେକ୍ଟର ଜମିରେ ରୋପଣ କରାଯାଏ । |
| ଜଳସେଚନ | - ମାଟିର ଆର୍ଦ୍ରତା ଦେଖି ଜଳସେଚନ କରାଯାଏ । ଗ୍ରୀଷ୍ମଋତୁରେ ପ୍ରତି ମାସରେ ଅତିକମରେ ୩ ଥର ପାଣି ସିଂଚନ କରାଯାଇ ଥାଏ । ବର୍ଷା ଋତୁରେ ପ୍ରାୟ ଜଳ ସେଚନର ଆବଶ୍ୟକ ପଡ଼ିନଥାଏ । |
| ଅମଳ | - ବନସ୍ପତି ପୂର୍ଣ୍ଣ ମାତ୍ରାରେ ବୃଦ୍ଧି ପାଇଲାପରେ ଅମଳ କ୍ଷମ ହୋଇଥାଏ । ବନସ୍ପତିର ପ୍ରଥମ ଅମଳ ଚାରା ରୋପଣର ୯୦-୯୫ ଦିନ ମଧ୍ୟରେ ହୋଇଥାଏ । ଏହାପରେ ପ୍ରତି ୬୫-୭୫ ଦିନ ଅନ୍ତରରେ ଅମଳ |

Digitized by srujanika@gmail.com

କରାଯାଇଥାଏ । ସାଧାରଣତଃ ସୂର୍ଯ୍ୟାଲୋକ ଥିବା ସମୟରେ ଉତ୍ତମ ଗୁଣ ସଂପନ୍ନ ତୁଳସୀ ସଂଗ୍ରହ କରାଯାଇଥାଏ ।
ପ୍ରାୟ ଏକ ହେକ୍ଟର ଜମିରୁ ବର୍ଷରେ ୨/୩ ଥର କରି ୫ ଟନ୍ ଔଷଧିଦ୍ରବ୍ୟ ସଂଗ୍ରହ କରାଯାଏ ।

ଲାଭଜନକ ହିସାବ - ପ୍ରତି ବର୍ଷ ଏକର ପ୍ରତି ଚାଷ ନିମିତ୍ତ ଟ.୧,୫୦୦ ଖର୍ଚ୍ଚ କରାଯାଉଥିଲାବେଳେ ଟ.୫,୦୦୦ର ଔଷଧି ଦ୍ରବ୍ୟ ଅମଳ ହୋଇଥାଏ ଏବଂ ୨୦-୨୫ କି.ଗ୍ରା. ସୁବାସିତ ତେଲ ବ୍ୟବସାୟିକ ସଂଗ୍ରହ କରାଯାଇଥାଏ ।

Digitized by srujanika@gmail.com

# ପାତାଳ ଗରୁଡ଼ ( Rauwolfia serpentina)

ମୃତ୍ତିକା ଓ ଜଳବାୟୁ - ଏହି ବନସ୍ପତି ବାଲିଆ, ପଟୁ, କାଦୁଆ ଓ ଉର୍ବର ମାଟିରେ ଭଲ ରୂପେ ବଢ଼େ । ଏହି ଗଛ ପାଇଁ ବାର୍ଷିକ ୧୫୦୦ ରୁ ୪୦୦୦ ମି.ମି. ବୃଷ୍ଟିପାତ ଦରକାର ପଡ଼େ ।

ଚାରାରୋପଣ - ମଞ୍ଜି, ଡ଼ାଳ ଓ ମୂଳରୁ ଅଙ୍କୁରୋଦ୍‌ଗମ କରାଯାଇପାରେ । କିନ୍ତୁ ବ୍ୟବସାୟିକ ଦୃଷ୍ଟିରୁ ମଞ୍ଜିରୁ ଚାରା ପ୍ରସ୍ତୁତ କରି ଜମିରେ ଲଗାଇବା ଉଚିତ୍ । ଚାରା ପ୍ରସ୍ତୁତ ହୋଇଗଲା ପରେ ଧାଡ଼ିକରି ଜମିରେ ଲଗାଯାଏ । ଧାଡ଼ି ଠାରୁ ଧାଡ଼ିର ବ୍ୟବଧାନ ୪୫ ସେ.ମି ଓ ଗଛରୁ ଗଛର ବ୍ୟବଧାନ ୩୦ ସେ.ମି ରହିବା ଉଚିତ୍ । ୧ ହେକ୍ଟର ଜମିରେ ୬ କେଜି ମଞ୍ଜିର ଚାରା ଦରକାର ହୋଇଥାଏ ।

ଜଳସେଚନ - ଚାରା ଲଗାଇବାପରେ ସଂଗେ ସଂଗେ ଜଳ ସେଚନ କରାଯାଏ । ଗ୍ରୀଷ୍ମ ଋତୁରେ ୨୦ ଦିନ ବ୍ୟବଧାନରେ ଓ ଶୀତ ଋତୁରେ ୩୦ ଦିନ ବ୍ୟବଧାନରେ ଜଳସେଚନ କରାଯାଇଥାଏ ।

ଅମଳ - ଚାରାରୋପଣର ୧୮ ମାସ ପରେ ଔଷଧ ପାଇଁ ମୂଳ ସଂଗ୍ରହ କରାଯାଏ । ଜୁନ୍-ଜୁଲାଇରେ ଲଗାଯାଇଥିବା ଚାରା ରୁ ଉନ୍ନତମାନର ଅମଳ ହୋଇଥାଏ । ଅମଳ ସମୟରେ ମୂଳ ମାଟିର ୪୦ ସେ.ମି ଗଭୀରକୁ ଯାଇଥାଏ ଓ ମାଟି ଖୋଳି ଅମଳ କରାଯାଇଥାଏ ।

ଲାଭଜନକ ହିସାବ - ପ୍ରତି ହେକ୍ଟର ପ୍ରତି ସମୁଦାୟ ଖର୍ଚ୍ଚ ଟ ୧୯,୦୦୦/- ହେଉଥିବା ବେଳେ ଆଦାୟ ଟ. ୬୦,୦୦୦/- ହୁଏ । ଓ ଲାଭାଂଶ ଟ. ୪୧,୦୦୦ ହୋଇଥାଏ ।

Digitized by srujanika@gmail.com

# ପିପ୍ପଳୀ ( Piper longum)

| | |
|---|---|
| ମୃତ୍ତିକା ଓ ଜଳବାୟୁ | - ପିପ୍ପଳୀ ଉର୍ବର ଜମିରେ ହୋଇଥାଏ । ଏହି ଲତାଜାତୀୟ ବନସ୍ପତି ୧୦୦ ରୁ ୧୦୦୦ ମିଟର ପର୍ଯ୍ୟନ୍ତ ବଡ଼ ଗଛକୁ ଆଶ୍ରା କରି ବଢ଼ିଥାଏ । ଅଧିକ ଅମଳ ପାଇଁ ପ୍ରାୟ ୨୦-୨୫ ପ୍ରତିଶତ ଛାଇ ଏହା ଦରକାର କରେ । |
| ଚାରା ରୋପଣ | - ବନସ୍ପତି ପାଇଁ ଏହି ଲତାର ମୂଳ ଓ ଗଣ୍ଠିରୁ ମାର୍ଚ୍ଚ ଓ ଏପ୍ରିଲ୍‌ରେ ଚାରା ପ୍ରସ୍ତୁତି କରାଯାଏ । ଏହି ସମୟରେ ଦିନେ ଛାଡ଼ି ଦିନେ ଜଳ ସେଚନ କରାଯାଏ । ମେ ମାସ ଶେଷ ଆଡ଼କୁ ଚାରା ଗୁଡ଼ିକ ଜମିରେ ଲଗାଇବା ପାଇଁ ସକ୍ଷମ ହୋଇଯାଇଥାଏ । |
| ଜଳସେଚନ | - ଏହା ଗୋଟିଏ ବଡ଼ ଗଛର ଆଶ୍ରା ନେଇ ବଢ଼ିଥାଏ । ଏଣୁ ବଡ଼ ଗଛର ସେଚନ ଦ୍ୱାରା ଏହାର ସେଚନ ହୋଇଯାଇଥାଏ । କିନ୍ତୁ ଗ୍ରୀଷ୍ମଋତୁରେ ନିୟମିତ ଜଳ ସେଚନ କରିବାକୁ ହୁଏ । ଉପଯୁକ୍ତ ସେଚନ ନ ହୋଇପାରିଲେ ପତ୍ରଗୁଡ଼ିକ ଶୁଖି ଝଡ଼ିଯାଏ ଓ ଫଳ ଧରିପାରେ ନାହିଁ । |
| ଅମଳ | - ଚାରା ଲଗାଇବାର ୬ ମାସ ପରେ ପିପଳୀ ଲତାରେ ଫଳ ଆସିବା ଆରମ୍ଭ କରେ । ଫଳ ଆସିବାର ୨ ମାସ ପରେ ପରିପକ୍ୱତା ଆସିଥାଏ । ପରିପକ୍ୱ ଅବସ୍ଥାରେ ଅମଳ କରି ୪-୫ ଦିନ ସୂର୍ଯ୍ୟାଲୋକରେ ଶୁଖାଯାଏ । ସେଗୁଡ଼ିକ ସମ୍ପୂର୍ଣ୍ଣରୂପେ ଶୁଖିଗଲେ କାଚ ଜାରରେ ରଖାଯାଏ । ପିପଳୀ ଲତାର ମୂଳ ଭାଗ ଓ ମୂଳର କିଛି ଉପରି ଭାଗ (ମୋଟା ଡ଼ାଳ) କୁ ଖଣ୍ଡ ଖଣ୍ଡ କରି ପିପଳୀ ମୂଳ ରୂପେ ଔଷଧ ରୂପେ ବ୍ୟବହୃତ ହୋଇଥାଏ । |

Digitized by srujanika@gmail.com

ଲାଭଜନକ ହିସାବ - ପ୍ରତି ହେକ୍ଟରରେ ପ୍ରଥମ ବର୍ଷ ପ୍ରାୟ ୪୦୦ କି.ଗ୍ରା (ଶୁଖିଲା ପରେ) ପିପ୍ପଳୀ ଫଳ ଆଦାୟ ହୋଇଥାଏ । ଏହା କ୍ରମଶଃ ବଢ଼ି ୩ ବର୍ଷରେ ହେକ୍ଟର ପ୍ରତି ୧୦୦୦ କି.ଗ୍ରା ଅମଳ ହୁଏ । ଏକ ବର୍ଷରେ ପ୍ରତି ହେକ୍ଟରରେ ଆଦାୟ ଟ ୧,୦୦,୦୦୦/- ରୁ ୧,୫୦,୦୦୦/- ପର୍ଯ୍ୟନ୍ତ ହୋଇଥାଏ ।

Digitized by srujanika@gmail.com

# ବେଲ (Aegle marmelos)

| | |
|---|---|
| ମୃତ୍ତିକା ଏବଂ ଜଳବାୟୁ | - ବେଲ ଚାଷ ପାଇଁ ବାଲିଆ ମାଟି, ସୂର୍ଯ୍ୟାଲୋକ ଏବଂ ଗରମ ଓ ଆର୍ଦ୍ରତାପୂର୍ଣ୍ଣ ଜଳବାୟୁ ଦରକାର ହୋଇଥାଏ । |
| ଚାରା ରୋପଣ | - ସାଧାରଣତଃ ମଞ୍ଜିରୁ ଚାରା ଗଛ ପ୍ରସ୍ତୁତି ହୋଇଥାଏ ଓ ଜୁନ୍ -ଜୁଲାଇରେ ଜମିରେ ବୁଣା ଯାଇଥାଏ । ଚାରା ପୂର୍ଣ୍ଣରୂପେ ପ୍ରସ୍ତୁତି ହେବା ପାଇଁ ପ୍ରାୟ ୧ ବର୍ଷ ଲାଗିଯାଏ । ଏହି ଚାରାର ଉଚ୍ଚତା ୫-୭ ସେ.ମି. ହୋଇଗଲେ ବର୍ଷାଋତୁରେ ରୋପଣ କରାଯାଏ । ବୈଜ୍ଞାନିକ ପଦ୍ଧତିରେ ଡ଼ାଳ ଓ ମୂଳରୁ ମଧ୍ୟ ଚାରା ସୃଷ୍ଟି କରାଯାଇପାରେ । |
| ଜଳସେଚନ | - ଗଛରୋପଣ ହୋଇଗଲାପରେ ପ୍ରତି ସପ୍ତାହରେ ବା ୧୫ ଦିନରେ ଥରେ ଜଳସେଚନ କରାଯାଏ । |
| ଅମଳ | - ଏହାର ଫଳ ୧ ବର୍ଷପରେ ପକ୍ୱ ଅବସ୍ଥାକୁ ଆସିଥାଏ ଓ ସଂଗ୍ରହ କରାଯାଏ । ଗୋଟିଏ ଗଛ ପ୍ରାୟ ୩୦୦-୪୦୦ ଫଳ ଦେଇଥାଏ । ୧ କି.ଗ୍ରା ଫଳ ଶସର ମୂଲ୍ୟ ଟ ୪୦/- -ଟ ୪୫/- ଅଟେ । |

Digitized by srujanika@gmail.com

# ବ୍ରାହ୍ମୀ (Bacopa monnieri)

ମୃତ୍ତିକା ଓ ଜଳବାୟୁ - ଏହି ବନସ୍ପତିଟି ସନ୍ତସନ୍ତିଆ ସ୍ଥାନ ଏବଂ ପାଣି ପାଖ ଜମିରେ ହୋଇଥାଏ । ବର୍ଷାଋତୁ ପୂର୍ବରୁ ଏବଂ ଗ୍ରୀଷ୍ମ ଋତୁର ଶେଷଭାଗରେ ଏହାର ରୋପଣ କରାଯାଇଥାଏ ।

ଚାରାରୋପଣ - ଚାରାରୋପଣର ୧ ଦିନ ପୂର୍ବରୁ ପ୍ରସ୍ତୁତ ଜମିରେ ପାଣି ସିଞ୍ଚନ ହେବା ଆବଶ୍ୟକ । ପୁରୁଣା ଗଛର ପବଗଣ୍ଠି ଓ ମୂଳ କାଟି କରି ପ୍ରସ୍ତୁତ ଜମିରେ ୪୦ ସେ.ମି. x ୪୦ ସେ.ମି. ବ୍ୟବଧାନରେ ରୋପଣ କରାଯାଇ ପର୍ଯ୍ୟାପ୍ତ ମାତ୍ରାରେ ପାଣି ଦେବେ । ମାର୍ଚ୍ଚ-ଜୁନ୍ ମଧରେ ଜମିରେ ରୋପଣ କରାଯାଇ ସେପ୍ଟେମ୍ବର ପରେ ଅମଳ କରାଯାଇଥାଏ । ବର୍ଷରେ ୨ ଥର ଅମଳ ହୁଏ । ପ୍ରଥମ ଅମଳ ଜୁନ୍ ମାସରେ ଓ ଦ୍ୱିତୀୟ ଅମଳ ଅକ୍ଟୋବରରେ ହୋଇଥାଏ ।

ଜଳସେଚନ - ଗଛ ଲାଗିଗଲା ପରେ ସଂଗେ ସଂଗେ ଜଳ ସିଂଚନ କରିବା ଆବଶ୍ୟକ । ପ୍ରତି ୭-୮ ଦିନ ବ୍ୟବଧାନରେ ପର୍ଯ୍ୟାପ୍ତ ମାତ୍ରାରେ ଜଳସେଚନ କରିବାକୁ ହେବ । ବର୍ଷା ସମୟରେ ଗଛରେ ପାଣି ଦେବା ଦରକାର ପଡ଼େ ନାହିଁ ।

ଅମଳ - ସାଧାରଣତଃ ଅକ୍ଟୋବର-ନଭେମ୍ବର ମାସରେ ଅମଳ କରାଯାଇଥାଏ । ସତର୍କତାର ସହିତ କାଟିକରି ଅମଳ କଲେ ମୂଳ ଓ ଡ଼ାଳର କିଛି ଭାଗ ଜମିରେ ରହିଯାଏ ଓ ପୁନଃ ଗଛ ବୃଦ୍ଧି ପ୍ରାପ୍ତ ହୋଇ ଅମଳକ୍ଷମ ହୋଇଥାଏ । ସଦ୍ୟ ଓ ଶୁଖିଲା ଗଛ ହେକ୍ଟର ପ୍ରତି ଯଥାକ୍ରମେ ୩୦୦ କ୍ୱିଣ୍ଟାଲ୍ ଓ ୬୦ କ୍ୱିଣ୍ଟାଲ ଅମଳ ହୁଏ ।

Digitized by srujanika@gmail.com

| | |
|---|---|
| ଲାଭଜନକ ହିସାବ | - ହେକ୍ଟର ପ୍ରତି ସମୁଦାୟ ଖର୍ଚ୍ଚ ଟ ୩୫,୦୦୦/- ହେଉଥିବା କେଳେ ଆଦାୟ (ଶୃଙ୍ଖଳା ଗଛ) ଟ ୨,୦୦,୦୦୦/- ହୋଇଥାଏ ଅର୍ଥାତ୍ ଲାଭାଂଶ ଆୟ ଟ ୧,୬୫,୦୦୦/- ଅଟେ । |

Digitized by srujanika@gmail.com

# ଭୂଇଁଅଁଳା (Phyllanthus amarus)

| | |
|---|---|
| ମୃତ୍ତିକା ଓ ଜଳବାୟୁ | - ଏହି ବନସ୍ପତିଟି ବଢ଼ିବାପାଇଁ କ୍ଷାରୀୟ, ସାଧାରଣ ଓ ଅମ୍ଳୀୟ ମୃତ୍ତିକା ଦରକାର କରେ । ଓଡ଼ିଶାର ପ୍ରାୟ ସମସ୍ତ ମାଟି ଏହାର ଚାଷ ପାଇଁ ଅନୁକୂଳ । |
| ଚାରାରୋପଣ | - ମଞ୍ଜିରୁ ଏହିଗଛ ସୃଷ୍ଟି ହୋଇଥାଏ । ଏକ ହେକ୍ଟର ଜମି ପାଇଁ ପ୍ରାୟ ୧ କି.ଗ୍ରା ମଞ୍ଜିରୁ ଚାରା ପ୍ରସ୍ତୁତି କରାଯାଏ । ଚାରା ୧୫-୩୦ ଦିନ ହୋଇଗଲାପରେ ଜମିରେ ୧୫ ସେ.ମି ବ୍ୟବଧାନରେ ଧାଡ଼ିକରି ରୋପଣ କରାଯାଇଥାଏ । |
| ଜଳସେଚନ | - ନିୟମିତ ବ୍ୟବଧାନରେ ବର୍ଷା ହେଉଥିଲେ ଚାରାରେ ପାଣିଦେବା ଦରକାର ପଡ଼େ ନାହିଁ । ଅଥବା ୧୫ ଦିନ ବ୍ୟବଧାନରେ ପାଣି ସିଞ୍ଚାଯାଇଥାଏ । |
| ଅମଳ | - ବର୍ଷାଋତୁ ପରେ ଏହାର ଅମଳ ହୁଏ । ସେପ୍ଟେମ୍ବର ମାସରେ ଔଷଧ ପ୍ରସ୍ତୁତି ପାଇଁ ଏହି ବନସ୍ପତିର ସମସ୍ତ ଅଂଶ ସଂଗ୍ରହ କରାଯାଇଥାଏ । |
| ଲାଭଜନକ ହିସାବ | - ପ୍ରତି ହେକ୍ଟର ଜମିରେ ସମୁଦାୟ ଖର୍ଚ୍ଚ ଟ ୫୦୦୦/- ହେଉଥିବା ବେଳେ ଆଦାୟ ଅର୍ଥାତ ପ୍ରକୃତ ଲାଭାଂଶ ଟ ୧୫୦୦୦/- ହୋଇଥାଏ । ଏହାର କି.ଗ୍ରା ପ୍ରତି ମୂଲ୍ୟ ଟ ୩୫/- ଟ ୪୦/- ଅଟେ । |

Digitized by srujanika@gmail.com

# ଭୂଇଁନିମ୍ବ (Andrographis paniculata)

ମୃତ୍ତିକା ଓ ଜଳବାୟୁ - ଏହା ପ୍ରାୟ ସମସ୍ତ ମୃତ୍ତିକାରେ ହୋଇଥାଏ । ସୂର୍ଯ୍ୟାଲୋକ ଓ ଆର୍ଦ୍ରତାଥିବା ଜଳବାୟୁ ଏହାର ବୃଦ୍ଧିପାଇଁ ଉପଯୁକ୍ତ ଅଟେ । ମୌସୁମୀ ବର୍ଷା ଆସିଗଲା ପରେ ଏହା ଘଞ୍ଚ ଆକାରରେ ବଢ଼ିଥାଏ ଓ ଏଥିରେ ଫୁଲ ଆସେ । ସେପ୍ଟେମ୍ବର ଠାରୁ ଡ଼ିସେମ୍ବର ମାସ ମଧ୍ୟରେ ଏଥିରେ ଫୁଲ ଓ ଫଳ ଆସେ ।

ଚାରା ରୋପଣ - ଏହି ବନସ୍ପତି ଫଳ ପାଚିଯାଇ ତଳେ ପଡ଼ି ବିକ୍ଷିପ୍ତ ଭାବେ ଆପେ ଆପେ ପାଣିର ସ୍ପର୍ଶ ପାଇଁ ଅଂକୁରିତ ହୋଇଥାଏ ଏବଂ ଏହାର ଚାରାମଧ୍ୟ ପ୍ରସ୍ତୁତ କରାଯାଇଥାଏ । ଚାରା ହେବାର ୧୦-୧୫ ଦିନ ପରେ ଓ ଜୁନ୍ ମାସ ମଧ୍ୟଭାଗରେ ଜମିରେ ରୋପଣ କରାଯାଇଥାଏ ।

ଜଳସେଚନ - ନିୟମିତ ବ୍ୟବଧାନରେ ବର୍ଷା ହେଉଥିଲେ ଜଳସେଚନର ଆବଶ୍ୟକ ପଡ଼େ ନାହିଁ । ଅନ୍ୟଥା ପ୍ରତି ମାସରେ ୨-୩ ଥର ଜଳସିଞ୍ଚନ କରାଯାଇଥାଏ ।

ଅମଳ - ଗଛ ରୋପଣର ୯୦-୧୦୦ ଦିନ ଭିତରେ ଅମଳକ୍ଷମ ହୋଇଥାଏ । ମେ-ଜୁନ୍‌ରେ ରୋପଣ ହୋଇଥିବା ଗଛ ସେପ୍‌ଟେମ୍ବର ଶେଷ ସୁଦ୍ଧା ଫୁଲ ଆସିଗଲାପରେ ଅମଳ କରାଯାଏ ।

ମୌସୁମୀ ବର୍ଷା ସମୟରେ ବୃଦ୍ଧିପ୍ରାପ୍ତ ହୋଇଥିବା ଗଛ ହେକ୍ଟର ପ୍ରତି ୩.୫ ରୁ

Digitized by srujanika@gmail.com

୪.୦ ଟନ (ଶୁଖିଗଲା ପରେ) ଆଦାୟ ଆସେ ।

ଲାଭଜନକ ହିସାବ - ପ୍ରତି ହେକ୍ଟର ପ୍ରତି ସମୁଦାୟ ଖର୍ଚ୍ଚ ଟ ୧୦,୦୦୦/- ହେଉଥିବା ବେଳେ ଆଦାୟ ଟ ୪୩,୦୦୦/- ହୋଇଥାଏ ଏବଂ ଲାଭାଂଶ ଟ ୩୩,୦୦୦/- ହୁଏ ।

Digitized by srujanika@gmail.com

# ମୂଷଲୀ (ଧଳା)

## ( Chlorophytum borivillianum)

ଏହା ଏକ କ୍ଷୁଦ୍ର ବନସ୍ପତି ଓ ଏହାର ପତ୍ର ରେଖା ସଦୃଶ । ଏହା ଭୂମି ଉପରେ ବିଛେଇ ହୋଇ ରହିଥାଏ । ଫୁଲ-ଧଳା, ମୂଳ ଗଣ୍ଠିରୁ ଚାରା ପ୍ରସ୍ତୁତ କରାଯାଇ ତଳି ପକାଯାଇଥାଏ ଓ ଏହାର ମୂଳ ଔଷଧୀୟ କାର୍ଯ୍ୟରେ ବ୍ୟବହୃତ ହୁଏ ।

ମୃତ୍ତିକା ଓ ଜଳବାୟୁ - ବାଲିଆ, ପଟୁ ଓ ଉର୍ବର ମାଟିରେ ଏହାର ଚାଷ କରାଯାଏ । ଉଷ୍ମ ଓ ଆଦ୍ରତାପୂର୍ଣ୍ଣ ଜଳବାୟୁ ଏହି ଚାଷ ପାଇଁ ଉପଯୁକ୍ତ ଅଟେ । ଏହି ବନସ୍ପତି ରୋପଣ ସମୟରେ ମୂଳରେ ଯେପରି ପାଣି ନ ଜମିବ, ସେଥିପ୍ରତି ଦୃଷ୍ଟି ଦେବା ଉଚିତ୍ ।

ଚାରାରୋପଣ - ଏହି ବନସ୍ପତି ମଞ୍ଜିରୁ ଏବଂ ମୂଳଗଣ୍ଠିରୁ ଚାରା ପ୍ରସ୍ତୁତ କରାଯାଏ । ଏହାର ମଞ୍ଜିର ରଙ୍ଗ କଳା । ଏହା ତଳିପକାଇବାର ୧୨-୧୬ ଦିନ ପରେ ଅଙ୍କୁରିତ ହୁଏ । ମେ ମାସ ୨ ୟ ସପ୍ତାହ ଠାରୁ ଜୁନ୍ ୨ ୟ ସପ୍ତାହ ଭିତରେ ୧ ସେ.ମି ମୂଳଗଣ୍ଠିରୁ ନୂତନ ଗଛ ସୃଷ୍ଟି ହୋଇଥାଏ । ଏହା ଜୁନ୍ ୨ୟ ସପ୍ତାହ ପରେ ଜମିରେ ଧାଡ଼ି ଆକାରରେ ରୋପଣ କରାଯାଇଥାଏ । ୧ ହେକ୍ଟର ଜମିରେ ୨୫୦-୩୦୦ କି.ଗ୍ରା ର ଚାରା ଦରକାର ହୋଇଥାଏ ।

ଜଳସେଚନ - ବର୍ଷାଋତୁରେ ବର୍ଷାପାଣି ପଡ଼ିବା ପରେ ଏହି ଚାରା ଜମିରେ ରୋପଣ କରାଯାଇଥାଏ । ନିୟମିତ ବ୍ୟବଧାନରେ ବର୍ଷା ନହେଲେ ପ୍ରତି ୧୦-୧୫ ଦିନ ବ୍ୟବଧାନରେ ଜଳସେଚନ କରିବା ଆବଶ୍ୟକ ।

ଅମଳ - ଚାରା ରୋପଣର ୯୦ ଦିନ ଭିତରେ ଏହା ଅମଳକ୍ଷମ ହୋଇଥାଏ । ବନସ୍ପତି ପରିପକ୍ୱ

Digitized by srujanika@gmail.com

ହୋଇଗଲା ପରେ ପ୍ରଥମେ ପତ୍ର ହଳଦିଆରଙ୍ଗ ହୋଇଯାଏ ଏବଂ ଶୁଖିଯାଇ ଝଡ଼ି ପଡ଼େ । ସେପ୍ଟେମ୍ବର-ଅକ୍ଟୋବର ମାସରେ ଏହି ବନସ୍ପତି ର ମୂଳ ଔଷଧପାଇଁ ମାଟିଖୋଳି ଅମଳ କରାଯାଏ । ଏହାର ମୂଳ ଦେଖିବାକୁ ଧଳା ଦେଖାଯାଏ । ଏହା ସଂଗ୍ରହ କରିବା ପରେ ସଫାକରି ଶୁଖାଇ ରଖାଯାଏ । ପ୍ରତି ହେକ୍ଟରରୁ ପ୍ରାୟ ୧ ଟନ୍ ମାଂସଳ ମୂଳ ସଂଗ୍ରହ କରାଯାଏ । ଏହା ଶୁଖିଗଲା ପରେ ପ୍ରାୟ ୨୦୦ କି.ଗ୍ରା ହୋଇଯାଏ ।

ଲାଭଜନକ ହିସାବ - ମୂଷଳୀ (ଧଳା) ବନସ୍ପତି ଚାଷ ଓ ଅମଳ ପାଇଁ ସମୁଦାୟ ଟ ୯,୨୫,୦୦୦/- ଖର୍ଚ୍ଚ ହେଉଥିବା ବେଳେ ଲାଭାଂଶ ଟ ୭,୦୦,୦୦୦/-ହୋଇଥାଏ ।

ଔଷଧୀୟ ଗୁଣ - ଏହା ବଳକାରକ, ପୌଷ୍ଟିକ, ଶୁକ୍ରବର୍ଦ୍ଧକ ଓ ନିୟମିତ ସେବନଦ୍ୱାରା ଯୌନ କ୍ଷମତା ବୃଦ୍ଧି ପାଇଥାଏ । ରୋଗ ପ୍ରତିରୋଧକ ଶକ୍ତି ବଢ଼ାଇଥାଏ ।

Digitized by srujanika@gmail.com

# ଶତାବରୀ ( Asparagus racemosus)

| | |
|---|---|
| ମୃତ୍ତିକା ଓ ଜଳବାୟୁ | - ବିଷୁବୀୟ ଓ ଉପବିଷୁବୀୟ ଅଂଚଳରେ ୧୨୦୦ ମିଟର ଉଚ୍ଚତା ମଧ୍ୟରେ ପ୍ରାୟ ସବୁ ପ୍ରକାର ମାଟିରେ ଏହି ଗଛ ହୋଇଥାଏ । ବାଲିଆ ମାଟିରେ ଅଧିକ ଅମଳ ହୋଇଥାଏ । |
| ଚାରାରୋପଣ | - ମଞ୍ଜିକୁ ଏପ୍ରିଲ୍ ମାସରେ ଚାରା ପ୍ରସ୍ତୁତି କରାଯାଏ । ୮-୧୦ ଦିନ ଭିତରେ ଅଙ୍କୁରୋଦ୍‌ଗମ୍ ହୋଇଯାଏ । କିଛିଦିନ ପରେ ଚାରା ବଡ଼ ହୋଇଗଲା ପରେ ଜମିରେ ଚାଷ କରାଯାଇଥାଏ । |
| ଜଳସେଚନ | - ବର୍ଷାଋତୁ ପରେ ଜଳସେଚନ କରାଯାଏ । ଶୀତଋତୁରେ ୨ ଥର ଓ ଗ୍ରୀଷ୍ମଋତୁରେ ଥରେ ଜଳସେଚନ କରିବାକୁ ହୁଏ । |
| ଅମଳ | - ଚାରାରୋପଣର ୪୦ ମାସ ପରେ ଶୀତ ଋତୁରେ ଅମଳ କରାଯାଏ ଓ କଲମୀ ଚାରାରୁ ୨ ବର୍ଷରେ ଅମଳ ହୋଇଥାଏ । ମୂଳକୁ ମାଟିରୁ ଖୋଳି ଛୁରୀରେ କାଟି ଗଛଠାରୁ ଅଲଗାକରି ଭଲରୂପେ ସଫାକରି ଶୁଖାଇ ରଖାଯାଏ । ପ୍ରାୟ ଗୋଟିଏ ଗଛରୁ ପ୍ରାୟ ୨୫୦୦-୩୦୦୦ ଗ୍ରାମ୍ ଓଜନର ଔଷଧ ଉପଯୋଗୀ ମୂଳ ସଂଗ୍ରହ କରାଯାଇଥାଏ । ପ୍ରତି ହେକ୍ଟର ଜମିରେ ୫-୭ ଟନ୍ ଓଜନର ମୂଳ ସଂଗ୍ରହ ହୋଇଥାଏ । |
| ଲାଭଜନକ ହିସାବ | - ହେକ୍ଟର ପ୍ରତି ସମୁଦାୟ ଖର୍ଚ୍ଚ ଟ ୧୦,୦୨୭/- ହେଉଥିବା ବେଳେ ଆଦାୟ ଟ ୩୬,୦୦୦/- ହୁଏ ଏବଂ ଲାଭାଂଶ ହେକ୍ଟର ପ୍ରତି ପ୍ରାୟ ଟ ୨୫,୯୭୩/- ହୋଇଥାଏ । |
| ଔଷଧୀୟ ଗୁଣ | - ଏହା ଶୁକ୍ର ବର୍ଦ୍ଧକ, ବାଜୀକର, ସ୍ତନ୍ୟ ବର୍ଦ୍ଧକ, ବଳ କାରକ ଓ ରସାୟନ । |

Digitized by srujanika@gmail.com

## ଆୟୁର୍ବେଦ ଓ ଔଷଧୀୟ ବୃକ୍ଷ ସମ୍ବନ୍ଧୀୟ କେତେକ ଆବଶ୍ୟକ ସୂଚନା

(A) Important Web-sites for getting Information Regarding Medicinal Plants:

1. http://www.nmpb.nic.in/cultivation.htm
2. http: //www.ccras.org
3. http://www.unanimedicine.org
4. http://www.unanimedicine.com
5. http://mohfw.nic.in/ismh
6. http://indianmedicine.nic.in

(B) Important address to collect information on Medicinal plants

I Chief Executive Officer, National Medicinal plants Board (Deptt. of ISM & H, Govt of India) Chandralok Building, 36, Janpath, New Delhi-110001

Telephone No: (011) 3319360, 3319255

Fax-(011) 3319360.

E-mail - nmpb22@indiatimes.com
E-mial - smpborissa@yahoo.co.in

II. Director, Indian Medicine & Homoeopathy, Orissa, Bhubaneswar, Heads of Deptt Building, 3rd floor, Annexe Bhubaneswar-751001, Phone-95-674-2404577

III. Spl. Secretary to Govt.

Forest & Environment Department and Member Secretary, State Medicinal Plants Board

Orissa Secretariat, Bhubaneswar-751001

Phone -95-674- 2400904, Fax-95-674- 2408820

IV. General Manager

Orissa Forests Development Corporation Limited

A/84, Kharavela Nagar,

Bhubaneswar-751 001

Digitized by srujanika@gmail.com

Orissa , Phone : 0674- 2535064, 2535934
E.mail-jpsinha_2000@yahoo.com

V. Principal
Gopabandhu Ayurveda Mahavidyalaya,
VIP Road, Puri-7512002
Phone-95-6752-222072 (O)

VI. Principal
KATS Ayurveda College & Hospital
Ankushpur, Berhampur, Ganjam-761100
Phone-95-680-2485030

VII. Principal
Govt. Ayurveda College
VIP Road, Bolangir-756001
Phone: 95-6652-232523

VIII Deputy Superintendent
Govt. Ayurvedic Hospital
Nageswar Tangi, Bhubaneswar -751014
Phone: (95-674) 2432347

IX. State Silviculturist
Silviculture Research Station,
Ghatikia, Bhubaneswar-751003
Phone: 95-674-2470327

X. Department of Horticulture
O.U.A.T., Bhubaneswar

XI. Associate Director of Research
Eastern Ghat High Land Zone,
OUAT, Similiguda, Post Box-10
Sunabeda-763002

XII.Director
Regional Research Laboratory
(Medicinal Plant Division)
Bhubaneswar-751003

Digitized by srujanika@gmail.com

# ଔଷଧୀୟ ବନସ୍ପତି ଚାଷ ଓ ବ୍ୟାପାର ସଂକ୍ରାନ୍ତୀୟ ବ୍ୟବସାୟୀ ଅନୁଷ୍ଠାନର ସୂଚନା

1. *Babulal Sarabhai & Company*
   *Khariar Road, Khariar- 766104(Orissa)*
2. *Orissa Forest Development*
   *Corporation Ltd., A/84, Kharavela Nagar*
   *Orissa, Bhubaneswar-7510002*
3. *Mishra Marketing Corporation*
   *Station Square, Unit III,*
   *Bhubaneswar-751001(Orissa)*
   *Phone -0674- 2534093, 2534742*
4. *Sabuja Biplava*
   *Adarshapada*
   *Bolangir-767001(Orissa)*
5. *Banaushadhi*
   *M.I.G, Plot No -15*
   *Natiguḍa, Bhawanipatna*
   *Kalahandi. (Orissa)*
6. *Janardan Prasad Ram*
   *Puruna Bazar,*
   *Jashipur,*
   *Mayurbhanj-757091(Orissa)*
7. *Orissa Agro Exports Ltd.*
   *Muktadeipur,*
   *Dhenkanal-759001(Orissa)*
8. *Nandan Bio Systems*
   *301, Sneha Enclave,*
   *Srinagar Colony, Hyderabad, (A.P.)*
9. *A.V.V. Satyanarayana*
   *A.P.Residential School,*
   *Dist-Visakapatanam. Pedabayalu-531040, (A.P.)*

Digitized by srujanika@gmail.com

*10. P.Rajinder Kumar K.Gangadhar*
*Exporters and Importers*
*21-2-156, Gulzar Hauz,*
*Hyderabad-500002, (A.P.)*

*11. Krihivala Herbal and Plant Products*
*OPP. NGO's House, SBI Road,*
*Sattenapalli-522403, Dist- Guntur, (A.P.)*

*12. M.S.Hoda*
*Piska Farm, Piska Nagri,*
*Ranchi-835303, (Jhadakhanda)*

*13. Baidyanath Ayurveda Bhawan Ltd.*
*Baidyanath Bhawan Road,*
*Patna, (Bihar)*

*14. Adcco Ltd.*
*P.O.- Adcconagar, Dist-Hoogli-712121, (W.B)*

*15. Ahmed Alli Jafferjee*
*Gandhi, 24 Pollock Street,*
*Calcutta-700 001, (W.B.)*

*16. Arun and Company*
*Arun Chamber, P-38*
*Indian Exchange Place*
*Calcutta-700 001 (W.B.)*

*17. Aurora Export Trading Agency*
*6-A, 3rd Floor, Saklat Place,*
*Calcutta-700072, (W.B.)*

*18. Expo. International*
*Exporters and Suppliers*
*20, Old Court House Street,*
*Calcutta-700061, (W.B.)*

*19. Giya Exports*
*60, Sir Hariram Goenka*
*Street, Calcutta-700 007, (W.B.)*

Digitized by srujanika@gmail.com

20. Global Export Pvt. Ltd.
55 Stephan House, 4B B-D
Bagh East. Calcutta-700 007, (W.B.)
21. Indian Drugs (Crude)
Distributors, 12-B, Clive
Row, P.B. 2836,
Calcutta-700 001, (W.B.)
22. Shiba Pada Kunda & Sons
160-B, Cotten Road,
Calcutta-700 023, (W.B.)
23 Simlipahar Forest
Development Corporation Ltd.
Calcutta-700 012, (W.B.)
24. Orissa Overseas
606, 6th Floor, Ashoka Estate,
Barakhamba Road
New Delhi-110001
25. Maharishi Ayurveda Products
C-2, N.I.P.Z, Noida, (U.P.) Pin-710304
26. Herbs Exporter
D-49 Defence Colony,
Delhi-110024
27. Himalayan Drugs Company
20, Najafgarh, New Delhi-110015
28. Hamdard Laboratory
Head Office, Herbs and Curde drugs,
Post Box-1507,
Hamdard Marg, Delhi-6
29. Matadin Bhagwan Dass
548 Katra Ishwar Bhawan
Khari Baoli, Delhi-110006

Digitized by srujanika@gmail.com

30. *Dr. Gurupal Singh Jariyal*
    *Senior Faculty*
    *Udyamata Vikas Kendra, 60, Jail Road,*
    *Jahangirbad, Bhopal, (M.P.)*
31. *Narmada Herbals and Medicinal Plants*
    *Kairobbs Building,*
    *Civil Lines, Near Railway Station*
    *Jabalpur-482001, (M.P.)*
32. *Raj & Company*
    *Dashhra Maidan,*
    *Neemach-458441 (M.P)*
33. *Satyam Herbs & Species*
    *Sihawa, Raipur Road,*
    *Dhamtari-492145 (M.P.)*
34. *Jain Herbs Enterprises*
    *Rajeswari Road, Shivpuri-473551, (M.P.)*
35. *Patidar Musli Farm & Research Centre*
    *Vill- Jotpur, Teh- Manawar, Dist- Dhar (M.P)*
    *Pin-454446*
36. *Ravi Agrotech*
    *Vill- Khajurikalam, Pipalani*
    *New Bypass Road, Bhopal, (M.P)*
37. *Maa Narmada Agrotech & Hi-tech Musali Farm*
    *Vill- Jotpur, Teh- Manawar, Dist-Dhar, (M.P.)*
    *Pin- 454446*
38. *Kasturi Musali Farm*
    *C/O- Kahneiya lal Patidar*
    *Vill- Misrod, Dist- Bhopal (M.P.)*
39. *Rajput Enterprises*
    *A-75, Kasturba Nagar, Bhopal-462024 (M.P)*

40 *Silviculture Research Station*
    *Tapoban, Gwalior, Rajastan*

Digitized by srujanika@gmail.com

41. *Mittal Musali Farm*
*P.O. Jalgaon, Jamod,*
*Dist-Buldhana, Pin-443402 , Maharastra*
42. *200 number of Licenced Ayurvedic Pharmacis in Orissa.*
*Working under the Directorate of*
*Indian Medicines and Homoeopathy,*
*Orissa, 3rd Floor, Heads of Deptt. Building*
*Bhubaneswar-751001, Orissa*
*Telephone-0674-2404577 (O)*



Digitized by srujanika@gmail.com

# ରୋଗାନୁସାରେ ସୂଚୀ



Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com



Digitized by srujanika@gmail.com

ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟ, ପୁରୀ ତଥା ଭାରତୀୟ ଭେଷଜ ଓ ହୋମିଓପାଥି ନିର୍ଦ୍ଦେଶାଳୟ ଅଧୀନସ୍ଥ ଅଭିଜ୍ଞ ଚିକିତ୍ସକମାନଙ୍କ ଦ୍ୱାରା ସଂପାଦିତ ଏହି ପୁସ୍ତକଟିରେ ୬୨ ଗୋଟି ହାତପା'ନ୍ତାରେ ମିଳୁଥିବା ବନସ୍ପତିର ପ୍ରାପ୍ତିସ୍ଥାନ ସହିତ ବନସ୍ପତି ସଂପର୍କରେ 'କ' ରୁ 'କ୍ଷ' ପର୍ଯ୍ୟନ୍ତ ସମସ୍ତ ତଥ୍ୟ ବର୍ଣ୍ଣନା କରାଯାଇଅଛି । ବିଭିନ୍ନ ରୋଗରେ ବନସ୍ପତିର ପ୍ରୟୋଗ ପ୍ରଣାଳୀ ତଥା କେତେକ ତାତ୍‌କାଳିକ ପ୍ରାଥମିକ ଚିକିତ୍ସା (First Aid Treatment) ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି । ନିର୍ଦ୍ଦିଷ୍ଟ ରୋଗରେ ପ୍ରୟୋଗ ପାଇଁ ଦର୍ଶାଯାଇଥିବା ଉପାୟଗୁଡ଼ିକ ବିଭିନ୍ନ ଆୟୁର୍ବେଦ ପୁସ୍ତକ, ତାଳପତ୍ର ପୋଥି ଓ ଅଭିଜ୍ଞ ଚିକିତ୍ସକ / ବୈଦ୍ୟଙ୍କର ବହୁବିଧ ପରୀକ୍ଷିତ ଅନୁଭୂତିରୁ ସଂଗୃହିତ ହୋଇଅଛି । ଏହା ସହିତ ଓଡ଼ିଶାର ଗ୍ରାମାଞ୍ଚଳର ଢ଼ଗ ମାଧ୍ୟମରେ ପ୍ରୟୋଗ କରାଯାଇଥିବା କେତେକ ଆୟୁର୍ବେଦିକ ଔଷଧ ଓ ଚିକିତ୍ସାସୂତ୍ରର ବର୍ଣ୍ଣନା ମଧ୍ୟ ଏଥିରେ ସ୍ଥାନ ପାଇଛି ।

କେନ୍ଦ୍ରୀୟ ଭାରତୀୟ ଚିକିତ୍ସାପଦ୍ଧତି ଓ ହୋମିଓପ୍ୟାଥି ବିଭାଗଦ୍ୱାରା ପ୍ରାଧାନ୍ୟ ଦିଆଯାଇଥିବା ୧୫ ଗୋଟି ବନସ୍ପତିର ଚାଷ ପ୍ରଣାଳୀ, ବ୍ୟବସାୟ ପ୍ରତିଷ୍ଠାନ ଓ ଲାଭଜନକ ହିସାବର ସଂକ୍ଷିପ୍ତ ବିବରଣୀ ମଧ୍ୟ ଏହି ପୁସ୍ତକରେ ବର୍ଣ୍ଣନା କରାଯାଇଅଛି ।

ପାରମ୍ପରିକ ଚିକିତ୍ସାରେ ରୁଚି ରଖିଥିବା ସମସ୍ତ ଜନସାଧାରଣଙ୍କର ଏହା ଏକ ମାର୍ଗଦର୍ଶକ ପୁସ୍ତକ ରୂପେ କାର୍ଯ୍ୟ କରିବ ।

Digitized by srujanika@gmail.com